# ପତିପତ୍ନୀ

ଲେଖକ :
ବିଦ୍ୟାଧର ବର୍ମା

ଉପସ୍ଥାପନା :
ଡକ୍ଟର ବିଜୟାନନ୍ଦ ସିଂହ



ପତିପତ୍ନୀ
Patipatni

ଲେଖକ : ବିମ୍ବାଧର ବର୍ମା
Author : Bimbadhar Varma

ଉପସ୍ଥାପନା : ଡକ୍ଟର ବିଜୟାନନ୍ଦ ସିଂହ
Presentation : Dr. Bijayananda Singh



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers,* Binodbehari
Cuttack-753 002, Orissa (India)

ପ୍ରଥମ ସଂସ୍କରଣ : ୧୯୪୭
ଚତୁର୍ଥ ସଂସ୍କରଣ : ୨୦୦୮ (୫୦୫ ଖଣ୍ଡ)
First Edition : 1947
Fourth Edition : 2008 (505 Copies)

ପ୍ରଚ୍ଛଦ : ବିଜୟ ପ୍ରଧାନ
Artist : Bijoy Pradhan

ଅକ୍ଷରସଜ୍ଜା : କଲ୍ୟାଣୀ, କଟକ
Typeset : Kalyani, Cuttack

ମୁଦ୍ରଣ : ଲକ୍ଷ୍ମୀ ଅଫ୍‌ସେଟ୍ ପ୍ରେସ୍, କଟକ
Printer : Laxmi Offset Press, Cuttack

ISBN 81-7401-671-6

Price : **Rs. 55**

# ଶିଳ୍ପର ପରିଧି

ଶିଳ୍ପୀଗୁରୁ ବିଦ୍ୟାଧର ବର୍ମା ଓଡ଼ିଶାର ଜାତୀୟ ଇତିହାସରେ ଏକ ବିସ୍ମୟ । ଜଣେ ପ୍ରତିଭାଧର ଶିଳ୍ପୀ ଭାବରେ ତାଙ୍କ ଅବଦାନର ତୁଳନା ନାହିଁ । ଜୀବନ ଥିଲା ସଂଘର୍ଷମୟ । ଏହା ସତ୍ତ୍ୱେ ସ୍ୱପ୍ନ ବିଭୋର ଏହି ମଣିଷଟି ଜୀବନର ଛନ୍ଦେଛନ୍ଦେ ଅନୁଭବ କରୁଥିଲେ ପୃଥିବୀର ସୌନ୍ଦର୍ଯ୍ୟ ଓ ସବୁଜିମାକୁ । "ଜୀବନ କ୍ଷୁଦ୍ର ନୁହେଁ ବିରାଟ" ଏହି କଥା ଉପଲବ୍ଧି ପୂର୍ବକ ସେ ଜୀବନଯାତ୍ରାକୁ ସୁଖମୟ କରିଥିଲେ ଦୁଃଖକୁ ଉପହାସ କରି । ବହୁ ବାଧା, ବନ୍ଧନ ଓ ସଙ୍କଟ ଅତିକ୍ରମି ଶିଳ୍ପୀ ବର୍ମା ଅବ୍ୟାହତ ରଖିଥିଲେ ଶିଳ୍ପ ଓ ସାହିତ୍ୟ ସାଧନା । ଓଡ଼ିଶାର ଚିତ୍ରକଳାଜଗତକୁ ସେ ଯେପରି ଦିଗ୍‌ଦର୍ଶନ ଦେଇଛନ୍ତି ସେହିପରି ଓଡ଼ିଆ ସାରସ୍ୱତ ଜଗତକୁ ବି ଶ୍ରୀସଂପନ୍ନ କରିଛନ୍ତି ।

ବିଦ୍ୟାଧର ବର୍ମା ଯଥାର୍ଥରେ ଜୀବନଶିଳ୍ପୀ । ତାଙ୍କ ଜୀବନର ସୂକ୍ଷ୍ମ ଅନୁଭବ କେତେବେଳେ ଚିତ୍ରରେ ତ କେତେବେଳେ ସାହିତ୍ୟରେ ପ୍ରକଟିତ । ସେ କୌଣସି ପାରମ୍ପରିକ ଚିତ୍ରବିଦ୍ୟା ଲାଭ କରି ନଥିଲେ ହେଁ ସ୍ୱକୀୟ ପ୍ରତିଭା ବଳରେ ଅପୂର୍ବ ଶିଳ୍ପ ସୃଷ୍ଟି କରିଯାଇଛନ୍ତି । ସେଥିପାଇଁ କୁହାଯାଏ ତାଙ୍କ ପ୍ରତିଭା ଥିଲା ନୈସର୍ଗିକ ।

ଦେବଦାସୀ, ସ୍କେଚ୍, କାଞ୍ଚିଅଭିଯାନ, ପାନ୍ଥବନିତା, ପଲ୍ଲୀବଧୂ, ଛିନ୍ନ ତାର, ସନ୍ଧ୍ୟା, ନବବଧୂର ପ୍ରସାଧନ, ଲାବଣ୍ୟବତୀ, ବାଲିରଥ, ବୁଭୁକ୍ଷା, ସାଧବ ଝିଅ, ଶେଷ ରଞ୍ଜନ, ପ୍ରଣତି, ଶୂନ୍ୟ ଓ ପୂର୍ଣ୍ଣ, ଗୋଧୂଳୀ ରାଗିଣୀ, ଅର୍ଦ୍ଧ ଶତବର୍ଷପରେ, ଶକୁନ୍ତଳା, ଦ୍ୱୀପାନ୍ୱିତା, ଛାୟା ଚନ୍ଦ୍ରିକା, ସ୍ମୃତିର ସୌରଭ, ଦେବଦାସୀ, ମେଘଦୂତ, ମିନି, ମେଘ ଓ ମୟୁର, ମାତା ଓ କନ୍ୟା ଚିତ୍ର, ପଲ୍ଲୀ କବି ନନ୍ଦକିଶୋର, ବିଶ୍ୱକବି ରବୀନ୍ଦ୍ରନାଥ, ମଧୁସୂଦନ ଦାସ, କବି ଜ୍ଞାନୀନ୍ଦ୍ର, ଶିଳ୍ପୀଜନନୀ ପ୍ରଭୃତି ପ୍ରତିକୃତି ଅଙ୍କନ ବର୍ମାଙ୍କ ଶିଳ୍ପ-ପ୍ରତିଭାର ମହତ୍ତ୍ୱ ପ୍ରମାଣିତ କରିଥାଏ । ଶିଳ୍ପୀ ଭାବରେ ଗଢ଼ିତୋଳିବାରେ ତାଙ୍କ ଜନ୍ମମାଟି ଓ ଗାଁର ପ୍ରାକୃତିକ ପରିବେଶର ଭୂମିକା ଗୁରୁତ୍ୱପୂର୍ଣ୍ଣ । ରତ୍ନଗର୍ଭା ବିରୂପା ନଦୀ କୂଳରେ କବିଙ୍କ ଗାଁ କୁସୁପୁର । ଏହି ଗ୍ରାମ ସନ୍ନିକଟରେ ଲଳିତଗିରି, ଉଦୟଗିରି, ରତ୍ନଗିରି ପାହାଡ଼ । ବୌଦ୍ଧଯୁଗର ସ୍ମୃତି ବହନ କରୁଥିବା

ଏହି ପର୍ବତଗୁଡ଼ିକରେ ରହିଛି ସେହି ସମୟର ଭାସ୍କର୍ଯ୍ୟ, ସ୍ଥାପତ୍ୟକଳାର ନିଦର୍ଶନ । କୁସୁପୁରର ପଲ୍ଲୀପ୍ରକୃତି ଅତୀବ ମନୋରମ । ଓଡ଼ିଶାର ସାମଗ୍ରିକ ଜୀବନକୁ ଶିଳ୍ପୀଗୁରୁଙ୍କ ଜନ୍ମମାଟିର ମହତ୍ତ୍ୱପୂର୍ଣ୍ଣ ଅବଦାନ ରହିଛି । ଏହି କୁସୁପୁରରେ ପଲ୍ଲୀକବି ନନ୍ଦକିଶୋର, ନିକଟସ୍ଥ ଗ୍ରାମ ମୁଳବସନ୍ତରେ ବାଗ୍ମୀ ବିଶ୍ୱନାଥ କର, ସଂସ୍କାରକ ବୈରାଗୀ ମିଶ୍ର, କୋଠପଦାରେ ଗଣକବି ବୈଷ୍ଣବ ପାଣି, ପଶଲୁଣ୍ଡାରେ ଆଚାର୍ଯ୍ୟ ପ୍ୟାରୀମୋହନ, ମାହାଙ୍ଗା ପଦନଦାସପୁରରେ ଆଦି ନାଟ୍ୟକାର ଜଗନ୍ ମୋହନଲାଲ୍, କାଳିଅଣ୍ଟିଠାରେ କବି ପ୍ରାଜ୍ଞ ପ୍ରାଣକୃଷ୍ଣ ସାମଲ ପ୍ରଭୃତି ଜନ୍ମ ଗ୍ରହଣ କରି ଜନ୍ମଭୂମିକୁ ଗୌରବାନ୍ୱିତ କରିଛନ୍ତି ।

ଶିଳ୍ପୀ ଭାବରେ ବିମ୍ବାଧର ବର୍ମା ଯେପରି ଅବିସ୍ମରଣୀୟ କୃତିତ୍ୱର ସୂଚନା ଦେଇଛନ୍ତି ତାହା ଏବେ ବି ଅନତିକ୍ରମ୍ୟ । ସେଥିପାଇଁ ତାଙ୍କୁ କୁହାଯାଇଛି 'ଶିଳ୍ପୀଗୁରୁ' । ବିଶ୍ୱ ପ୍ରସିଦ୍ଧ କୋଣାର୍କ, ପୁରୀ ଶ୍ରୀମନ୍ଦିର, ଲିଙ୍ଗରାଜ ମନ୍ଦିର, ରାଜାରାଣୀ ମନ୍ଦିର ପ୍ରଭୃତି ଉତ୍କଳୀୟ କଳା ନୈପୁଣ୍ୟର ପ୍ରତୀକ । ଓଡ଼ିଶାର ବୌଦ୍ଧବିହାର ମଧ୍ୟ ଉତ୍କଳୀୟ ପ୍ରାଚୀନ ପରମ୍ପରାର ସଂକେତ ଦିଏ । ଓଡ଼ିଶାର କଳାଶିଳ୍ପୀମାନଙ୍କର ସ୍ୱତନ୍ତ୍ର ମର୍ଯ୍ୟାଦା ଓ ସମ୍ମାନ ସମଗ୍ର ବିଶ୍ୱରେ ରହିଛି । ବିମ୍ବାଧର ବର୍ମା ଏହି ମହାନ୍ ପରମ୍ପରାକୁ ଉଜ୍ଜୀବିତ କରାଇବା ସହ ଏକ ନୂତନ ଯୁଗ ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି । ଶିଳ୍ପୀଗୁରୁ ବିମ୍ବାଧର ସମୟ ଓ ଜୀବନର ବାସ୍ତବ ରୂପକାର । ସଙ୍ଗୀତ ପ୍ରତି ଥିଲା ତାଙ୍କର ପ୍ରବଳ ଆଗ୍ରହ । ଚାରୁକଳା ଓ ସାରସ୍ୱତକଳା ଏକୀଭୂତ ହୋଇଥିଲା ତାଙ୍କ ବ୍ୟକ୍ତିତ୍ୱରେ, ଯାହା ପ୍ରତିଭାବାନ୍ ଶିଳ୍ପୀଙ୍କ କ୍ଷେତ୍ରରେ କ୍ୱଚିତ୍ ଦେଖାଯାଏ ।

ଓଡ଼ିଆ ସାହିତ୍ୟକୁ ବିମ୍ବାଧର ବର୍ମାଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ସାହିତ୍ୟ କ୍ଷେତ୍ରରେ ସେଥିଲେ ଔପନ୍ୟାସିକ, କବି, ପ୍ରାବନ୍ଧିକ ଓ ନାଟ୍ୟକାର । ତାଙ୍କ ରଚିତ 'ପତିପତ୍ନୀ' ଉପନ୍ୟାସ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ସ୍ୱାତନ୍ତ୍ର୍ୟବିହୀନ ସୃଷ୍ଟି ବ୍ୟକ୍ତିତ୍ୱବିହୀନ ବ୍ୟକ୍ତିଙ୍କ ପରି ଅନାକର୍ଷଣୀୟ । ପରିମାଣ ନୁହେଁ ସୃଷ୍ଟିର ଲଳିତ ବିଭବହିଁ ସ୍ରଷ୍ଟାର ସର୍ଜନାନୈପୁଣ୍ୟ ଓ ପରାକାଷ୍ଠାର ଦ୍ୟୋତନା– ଅଗଣିତ କିଂଶୁକ ଅପେକ୍ଷା ଗୋଟିଏ ରକ୍ତ ଗୋଲାପ ଅଧିକ ଶ୍ରଦ୍ଧାଭାଜନ । ଆକାଶରେ ଅନେକ ତାରାର ସ୍ଥିତି ସତ୍ତ୍ୱେ ଚନ୍ଦ୍ରର ମହିମା ସ୍ୱୀକୃତ । ତେଣୁ ସୃଷ୍ଟିର ପରିମାଣ ନୁହେଁ ସୃଷ୍ଟିର ବୈଭବହିଁ ସ୍ରଷ୍ଟାକୁ କାଳଜୟୀ କରେ । ଏହି ଦୃଷ୍ଟିକୋଣରୁ ବିଗ୍ଭର କଲେ 'ପତିପତ୍ନୀ' ଉପନ୍ୟାସର ଏକ ଅନବଦ୍ୟ ଭୂମିକା ରହିଛି ଆମ ସାହିତ୍ୟରେ । ଓଡ଼ିଆ ଉପନ୍ୟାସ ସାହିତ୍ୟରେ 'ପତିପତ୍ନୀ' ଏକ ନୂତନ ପରୀକ୍ଷା– ଏକ ନୂତନ ଆବେଦନ । ବିଷୟବସ୍ତୁ, ଆଭିମୁଖ୍ୟ, ଚରିତ୍ରଚିତ୍ରଣ ଓ ଉପନ୍ୟାସକଳା ଦୃଷ୍ଟିକୋଣରୁ ଏହି ସୃଷ୍ଟି ଅନନ୍ୟ ଓ ଅସାଧାରଣ । ଉକ୍ତ ଉପନ୍ୟାସର ଜନ୍ମଜାତକ ବେଶ୍ ଘଟଣାପୂର୍ଣ୍ଣ । 'ପତିପତ୍ନୀ' ଉପନ୍ୟାସ

ପାଠକମାନଙ୍କୁ ବେଶ୍ ଆଲୋଡ଼ିତ କରିଛି । ଏହି ଉପନ୍ୟାସ ୧୯୪୩ ମସିହାରେ ରଚିତ ଓ ୧୯୪୭ ମସିହାରେ ନାରାୟଣ ପୁସ୍ତକାଳୟ, ଗ୍ରନ୍ଦିନୀଚୌକ, କଟକଙ୍କ ଦ୍ୱାରା ପ୍ରଥମେ ପ୍ରକାଶିତ । ଅପର୍ଣ୍ଣା, ସଦାନନ୍ଦ, ଅୟସ୍କାନ୍ତ ପ୍ରଭୃତି ତିନୋଟି ଉପନ୍ୟାସ ସେ ରଚନା କରିଥିଲେ, ସେଗୁଡ଼ିକ ଅପ୍ରକାଶିତ । ସେ ମଧ୍ୟ ବଭ୍ରୁବାହନ, ଧ୍ରୁବ, ପ୍ରହ୍ଲାଦ, ଭଗୀରଥ ଇତ୍ୟାଦି ପୌରାଣିକ ନାଟକ ଲେଖିଯାଇଛନ୍ତି । 'ସଙ୍ଗୀତ କୃଷ୍ଣପ୍ରିୟା' ତାଙ୍କର ପ୍ରକାଶିତ ସଙ୍ଗୀତ ସଂକଳନ । ପ୍ରବନ୍ଧ ରଚନାରେ ବର୍ମାଙ୍କ କୃତିତ୍ୱ ମଧ୍ୟ କିଛି କମ୍ ନୁହେଁ । ବହୁ ପ୍ରବନ୍ଧ ତତ୍କାଳୀନ ପତ୍ରପତ୍ରିକା ପୃଷ୍ଠା ମଣ୍ଡନ କରିଥିଲା । ମୋ ଜୀବନ ଉପରେ ରୂପର ପ୍ରଭାବ, ଶିଳ୍ପରେ ନଗ୍ନତା, ଚିତ୍ରଶିଳ୍ପର ଆଦର୍ଶ 'ଆରତୀ'ରେ, ଚୈନିକ ଚିତ୍ରକଳା 'ଭଞ୍ଜ ପ୍ରଦୀପ'ରେ ଶିଳ୍ପୀ, ଶିଳ୍ପ ଓ କଳା ପ୍ରଭୃତି ମୌଳିକ ପ୍ରବନ୍ଧ 'ଚତୁରଙ୍ଗ'ରେ ପ୍ରକାଶିତ ହୋଇ ଯଥେଷ୍ଟ ଆଦୃତି ଲାଭ କରିଛି ।

ଏହିସବୁ ରଚନା ସତ୍ତ୍ୱେ ବିମ୍ବାଧର ବର୍ମା ତାଙ୍କର ଏକମାତ୍ର ଉପନ୍ୟାସ 'ପତିପତ୍ନୀ' ପାଇଁ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରନ୍ତି । ସ୍ୱାତନ୍ତ୍ର୍ୟ ହିଁ ଉତ୍କର୍ଷର ପରିଚୟ । ଏହି ଉପନ୍ୟାସର ତୃତୀୟ ସଂସ୍କରଣ (୧୯୬୯) ପ୍ରକାଶନ କାଳରେ ଏହାର ସୁଯୋଗ୍ୟ ପ୍ରକାଶକ ନାରାୟଣ ଚନ୍ଦ୍ର ଦାସ ପ୍ରଦାନ କରିଥିବା ମନ୍ତବ୍ୟ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ, "ଆଜକୁ ପ୍ରାୟ ୩୦ ବର୍ଷ ତଳର କଥା, ସେତେବେଳେ ମୁଁ ନୂଆକରି ନାରାୟଣ ପୁସ୍ତକାଳୟ ଆରମ୍ଭ କରିଥାଏ । ସେତିକିବେଳେ ମୋ ପାଖରେ ହଠାତ୍ ଆସି ଦେଖାଦେଲେ ଓଡ଼ିଶାର ବିଶିଷ୍ଟ ଚିତ୍ରକର ବିମ୍ବାଧର ବର୍ମା । ସେତେବେଳେ ତାଙ୍କର ତରୁଣ ବୟସ । ହସ ହସ ମୁଖ ଦେଖି ଏବଂ ମିଠାମିଠା କଥା ଶୁଣି ମୋ ମନ ତାଙ୍କ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇ ଉଠିଲା । ମୁଁ ତାଙ୍କୁ ଦେଖି ଭାବିଲି ବୋଧେ ବର୍ମା କୌଣସି ବହିପତ୍ରର କଭର ଅଙ୍କନ କରିବା ସକାଶେ ଆସିଛନ୍ତି । କିନ୍ତୁ ଯେତେବେଳେ ସେ ହସି ହସି କପି ଖଣ୍ଡକ ମୋ ହାତକୁ ବଢ଼ାଇ ଦେଲେ ମୁଁ ମନେ ମନେ ଆଶ୍ଚର୍ଯ୍ୟ ହୋଇ ପଚାରିଲି – ଏ କ'ଣ ? ସେ କହିଲେ 'ପତିପତ୍ନୀ' ଉପନ୍ୟାସ ଖଣ୍ଡେ ଲେଖିଛି, ଏ ହେଉଛି ତାରି କପି । ଅନେକ ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇଛି । ସମସ୍ତେ ରିକ୍ତ ହସ୍ତରେ ଫେରାଇ ଦେଇଛନ୍ତି । ଆଶାକରେ ଆପଣ ବୋଧେ ନିରାଶ କରିବେ ନାହିଁ । ମୁଁ ତାଙ୍କଠାରୁ ଏପରି କଥା ଶୁଣି କୌଣସି ଉତ୍ତର ନଦେଇ କପି ଖଣ୍ଡକ ସାଦର ଗ୍ରହଣ କଲି ଓ ପରଦିନ ଛାପା ଆରମ୍ଭ କରିଦେଲି । ଏକ ମାସ ଭିତରେ ବହିଟି ଯେତେବେଳେ ଆତ୍ମ ପ୍ରକାଶ କଲା ସେଦିନର କଥା ଆଜି ମନେପଡ଼ିଲେ ଆଖିରୁ ଲୁହ ବହି ଆସୁଛି । ବର୍ମା ଆସି ହସି ହସି ମୋତେ କୁଣ୍ଢାଇ ପକାଇ କହିଲେ– "ନାରଣ ବାବୁ ଆପଣଙ୍କ ପାଖରେ ମୁଁ ଚିରଋଣୀ, ମୃତ 'ପତିପତ୍ନୀ' ଆଜି ଆପଣଙ୍କ ସକାଶେ ଜୀବନ୍ତ ହୋଇ ଉଠିଛି । ଏହା କହି କଚେରୀକୁ ଯାଇ

ବର୍ମା ଗୋଟିଏ ରେଜିଷ୍ଟ୍ରି କବଲା ଆଣି ମୋ ପାଖରେ ପକାଇଦେଇ କହିଲେ ଏହାର ସ୍ୱତ୍ୱ ଚିରଦିନ ଆପଣଙ୍କର । ମୋର କେବଳ ନାଆଁ । ମୁଁ ତାଙ୍କର ଏପରି ସରଳ ବ୍ୟବହାର ଦେଖି ତାଙ୍କର ଉଚିତ ପ୍ରାପ୍ୟ ସମସ୍ତ କଡ଼ାଗଣ୍ଡା ହିସାବ କରି ଦେଇଦେଲି ।"

ସାମାଜିକ ପରମ୍ପରା ଓ ସଂସ୍କାର ଆଭିମୁଖ୍ୟ ନେଇ 'ପତିପତ୍ନୀ' ରଚିତ । ସାମାଜିକ ବୈଷମ୍ୟ ଓ ଜାତିଭେଦକଥା ଏଥିରେ କୁହାଯାଇଛି । ଉପନ୍ୟାସର ଅନ୍ତଃସ୍ୱର କରୁଣ । ଏକ ଆଦର୍ଶବାଦ ପ୍ରତିଷ୍ଠା ପାଇଁ ଆହ୍ୱାନ ଏହାର ବୈଶିଷ୍ଟ୍ୟ । ମୁଖ୍ୟ ଚରିତ୍ର ଶୁଭେନ୍ଦ୍ର ଓ ପୁଷ୍ପ ଉଭୟ ଆଦର୍ଶବାଦର ପ୍ରତିନିଧିତ୍ୱ କରିଛନ୍ତି । ସାମାଜିକ ବ୍ୟବସ୍ଥା ଭିତରେ ସରଳ, ନିରୀହ ମଣିଷମାନେ କିପରି ଜଳିପୋଡ଼ି ଯାଇଛନ୍ତି ତାହାର ଚିତ୍ର ଅଙ୍କନ କରିବା ସହ ତାହାର ନିରାକରଣ ପାଇଁ ସେ ପଥ ନିର୍ଦ୍ଦେଶ କରିଛନ୍ତି । ଜାତିଭେଦ ଓ ବିଧବା ବିବାହ ସମ୍ପର୍କରେ ଲେଖକଙ୍କ ବିଚାରଧାରା ବେଶ୍ ପ୍ରଗତିଶୀଳ । ବର୍ଣ୍ଣନାର ଚମତ୍କାରିତା ସହ ସହଜ ଭାଷା ଓ ମନୋରମ ଶୈଳୀରେ ଉପନ୍ୟାସଟି ଗତିଶୀଳ ହୋଇଛି । ବିଦ୍ୟାଧର ବର୍ମାଙ୍କ ଚିତ୍ର ବା ଉପନ୍ୟାସକୁ ଦେଖିଲେ ମନେହୁଏ ଏହା ନିର୍ଜୀବ ଚିତ୍ର କିମ୍ବା କଳ୍ପନାର ରାଗରଙ୍ଗ ନୁହେଁ, ଗୋଟିଏ ଗୋଟିଏ ଅପୂର୍ବ ସୌନ୍ଦର୍ଯ୍ୟ ଓ ବାସ୍ତବ ଭାବନାର ଜୀବନ୍ତ ରୂପରେଖ । ତେଣୁ 'ପତିପତ୍ନୀ' ଯଥାର୍ଥରେ ଏକ ମନୋଜ୍ଞ ଜୀବନର ଚିତ୍ରଶାଳା । ଏହି ପ୍ରସଙ୍ଗରେ 'ପତିପତ୍ନୀ' ଉପନ୍ୟାସକୁ ଅଧ୍ୟୟନ କଲେ ପାଠକ ଆଶ୍ଚର୍ଯ୍ୟ ହେବେ ଯେ ଜଣେ ଅବିବାହିତ ଲେଖକଙ୍କ ବିଚିତ୍ର ପ୍ରେମାନୁଭୂତି କିପରି ଯଥାର୍ଥ ରୂପ ନେଇଛି । ବିଦ୍ୟାଧର ବର୍ମା ଥିଲେ ସାରାଜୀବନ ଅବିବାହିତ । ଜୀବନ ଥିଲା ଦୁଃଖମୟ ଅନେକ ଘାତପ୍ରତିଘାତ ସତ୍ତ୍ୱେ ସେ ପଥଚ୍ୟୁତ ହୋଇନାହାନ୍ତି କେବେ ଅଥଚ ପ୍ରେମ ଓ ପ୍ରଣୟର ବାସ୍ତବ ଦିଗ ଦିଗନ୍ତ ବର୍ଣ୍ଣନାରେ ତାଙ୍କର ଆବେଗାନୁଭୂତିର ଅଭାବ ନାହିଁ । ଉପନ୍ୟାସର ଆରମ୍ଭ ଯେପରି ଉତ୍କଣ୍ଠାମୟ– ପରିଣତି ସେହିପରି ଆନନ୍ଦମୟ । ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଓ ମାନବିକ ଦୃଷ୍ଟିଦର୍ଶନରେ ଉପନ୍ୟାସ ଝଙ୍କୃତ ।

ପ୍ରେମିକ ପ୍ରେମିକା ଶୁଭେନ୍ଦ୍ର ଓ ପୁଷ୍ପ । ପ୍ରେମ ଜାତି–ବର୍ଣ୍ଣ–ଧର୍ମ– ସବୁକୁ ଅତିକ୍ରମ କରି ଲକ୍ଷ୍ୟ ପୂରଣ କ୍ଷେତ୍ରରେ ଅଗ୍ରସର ହୋଇପାରେ । ମାନବିକତାର ପ୍ରକୃତ ରୂପ ପ୍ରେମ ଭିତରେ ହିଁ ଉନ୍ମୋଚିତ ହୁଏ । ଭୋଗ ନୁହେଁ–ତ୍ୟାଗହିଁ ପ୍ରେମର ମୂଳମନ୍ତ୍ର । ଏକ ନିଃସ୍ୱାର୍ଥପର ଆତ୍ମିକ ମିଳନ ହିଁ ଜୀବନ ଯାତ୍ରାକୁ ସଫଳ କରେ । ସମାଜର କୁସଂସ୍କାର ଓ ଅନ୍ଧବିଶ୍ୱାସରେ ନିପୀଡ଼ିତ ଉପନ୍ୟାସର ନାୟିକା ପାଟକୀ ଜାତିର ପୁଷ୍ପ । ପାଟକୀ ଜାତିରେ ଶାଢ଼ି ଶଙ୍ଖା ଦେଇ ଦୁତିୟ ହୁଅନ୍ତି । କୁରୂପ ବୃଦ୍ଧଟି ଶାଢ଼ିଶଙ୍ଖା ଦେଇ ପୁଷ୍ପକୁ ଘେନି ଯାଉଥିଲା ଦ୍ୱିତୀୟ ବିବାହ କରିବାପାଇଁ । କିନ୍ତୁ ବିବାହକର୍ମର ଦୁଇଦିନ ପୂର୍ବରୁ ଚରିତ୍ରହୀନ ବୃଦ୍ଧର ଦେହାନ୍ତ

ହୋଇଛି । ସେଥିପାଇଁ ପୁଷ୍ପ ହୋଇଯାଇଛି ଏ ସମାଜ ଆଖିରେ ଅଲକ୍ଷଣୀ । ସମାଜ ତାକୁ ମୃତ୍ୟୁମୁଖକୁ ଠେଲିଦେଇଛି କଳଙ୍କର ଟୀକା ପିନ୍ଧାଇ । କିନ୍ତୁ ଶୁଭେନ୍ଦ୍ର ପରି ଯୁବକ ସଂସ୍କାର ଓ ମାନବିକତାର ପ୍ରତୀକ ଭାବରେ ଉଭା ହୋଇଛନ୍ତି ଓ ପୁଷ୍ପକୁ ମୃତ୍ୟୁମୁଖରୁ ରକ୍ଷା କରିଛନ୍ତି । ଶୁଭେନ୍ଦ୍ର ମାଧ୍ୟମରେ ଲେଖକଙ୍କ ସାମାଜିକ ପ୍ରତିବଦ୍ଧତା ବେଶ୍ ସ୍ପଷ୍ଟ ହୋଇପାରିଛି । ସ୍ୱାଧୀନତା ପୂର୍ବର ଓଡ଼ିଶାର ସାମାଜିକ ଚିତ୍ର ଏଥିରୁ ଜଣାପଡ଼େ । ଲେଖକଙ୍କ ଭାଷାରେ– "ଲୋକେ କହିବେ, ଗୋଟାଏ ବାଟରୁ ସାଉଁଟି ଆଣି ସୁନ୍ଦରୀ ବୋଲି ଦେହ ଲାଳସାରେ ଭଲମନ୍ଦ ନ ଭାବି ବିବାହ କରିଛି । ଭାବନ୍ତୁ, ତା'ର ସେଥିରେ ଯାଏ ଆସେ କେତେ ? ଜନତା ସେ ବି ଅତି ତୁଚ୍ଛ ଗୋଟାଏ କାକ ଗୋଷ୍ଠୀ ବ୍ୟତୀତ ଆଉ କିଛି ନୁହେଁ । କେବଳ କାକ ହୋଇ ଉଡ଼ି ବୁଲିବେ ମାତ୍ର ।"

ମିଳନର ପ୍ରାକ୍ ମୁହୂର୍ତ୍ତରେ କଥୋପକଥନ ଭିତରେ ପ୍ରେମିକର ପ୍ରାଣର ବ୍ୟାକୁଳତାକୁ ପ୍ରକାଶ କରିବାରେ ଶିଳ୍ପୀ ବର୍ମା ଥିଲେ ସିଦ୍ଧହସ୍ତ– "ସମାଜକୁ ଡରୁଛ ? ଯେଉଁ ସମାଜ ତମପରି ପ୍ରସ୍ଫୁଟିତ ସୁକୋମଳ ପୁଷ୍ପକୁ ମଧ୍ୟ ବିଷ ଦେଇମାରେ, ଯେଉଁ ସମାଜ ତମକୁ ମୋତେ ମିଳନ କରିଦେଇପାରେ ନାହିଁ–, କେବଳ ବିଚ୍ଛିନ୍ନ କରିଦିଏ, ଯେଉଁ ସମାଜ କତିରେ ହୃଦୟ ଅପେକ୍ଷା ଜାତିର ମୂଲ୍ୟ ବେଶି, ମନୁଷ୍ୟ ଅପେକ୍ଷା ତା'ର ନିୟମର ମୂଲ୍ୟ ବେଶି, ପ୍ରାଣର ବନ୍ଧନ ଅପେକ୍ଷା ଅର୍ଥଶୂନ୍ୟ ମନ୍ତ୍ରର ବନ୍ଧନ ଅଧିକ ସମ୍ମାନିତ, ସେହି ସମାଜ ଆଜି ତମର ଏ ତପ୍ତ ନିଃଶ୍ୱାସରେ ଜଳିପୋଡ଼ିଯାଉ ।"

ବିମ୍ବାଧର କେବଳ ବିଦ୍ରୋହୀ ଥିଲେ ତାହା ନୁହେଁ, ସେଥିଲେ ଜଣେ ବାସ୍ତବବାଦୀ ମଣିଷ ମଧ୍ୟ । ତାଙ୍କ ବକ୍ତବ୍ୟ ହିଁ ତା'ର ପ୍ରମାଣ – "ସୃଷ୍ଟିରେ ନାରୀ ଓ ପୁରୁଷ ଉଭୟଙ୍କର ସ୍ଥାନ ସମାନ, କେହି ବଡ଼ କେହି ସାନ ନୁହେଁ । ନାରୀପୁରୁଷ ପରସ୍ପର ପତିପତ୍ନୀ ସ୍ୱାମୀସ୍ତ୍ରୀ ନୁହଁନ୍ତି; ପରସ୍ପର ବନ୍ଧୁ; ପ୍ରଭୁ ଆଉ ଦାସୀ ନୁହଁନ୍ତି ।"

ଔପନ୍ୟାସିକ ଉପେନ୍ଦ୍ର କିଶୋର ଦାସଙ୍କ 'ମଲାଜହ୍ନ' ଓ ବୈଷ୍ଣବ ଚରଣ ଦାସଙ୍କ 'ମନେମନେ' ଉପନ୍ୟାସ ଯେପରି ସର୍ବାଧିକ ପାଠକପ୍ରିୟ ହୋଇଥିଲା– ସେହିପରି 'ପତିପତ୍ନୀ' ଉପନ୍ୟାସ ମଧ୍ୟ ଜନପ୍ରିୟ ଥିଲା । ଏହା ପାଠକମାନଙ୍କୁ ଆହ୍ଲାଦିତ କରି ଏକ ସାମାଜିକ ଆନ୍ଦୋଳନ ପାଇଁ ପ୍ରସ୍ତୁତି ଆରମ୍ଭ କରିଥିଲା ଅଧିକନ୍ତୁ । ଜୀବନ ଓ ଜଗତର ଗଭୀର ରହସ୍ୟାନୁଭୂତି, ସ୍ରଷ୍ଟା ହୃଦୟର ଉପଲବ୍ଧି ଓ ଶିଳ୍ପୀ ପ୍ରାଣର ସମବେଦନା ନିଜ ସାରସ୍ୱତ ସୃଷ୍ଟିରେ ଅକ୍ଷୁଣ୍ଣ ରଖିଛନ୍ତି ବିମ୍ବାଧର ବର୍ମା । ତାଙ୍କର ମାନବୀୟ ସହାନୁଭୂତି ଓ କରୁଣାସିକ୍ତ ଶୈଳୀ ଉପନ୍ୟାସକୁ ଚଳଚଞ୍ଚଳ କରି ଦେଇଛି ।

ବିମ୍ବାଧର ବର୍ମାଙ୍କ ଜନ୍ମ ୨୧ ଅଗଷ୍ଟ ୧୯୦୧ ମସିହା ଏବଂ ତାଙ୍କର ତିରୋଧାନ ଘଟିଥିଲା ୨୩ ଡିସେମ୍ବର ୧୯୫୩ରେ । ପିତାଙ୍କ ନାମ ଲକ୍ଷ୍ମୀଧର ଜେନା ଓ ମାତାଙ୍କ ନାମ ଶାରଦା ଦେବୀ । ତାଙ୍କର ପ୍ରକୃତ ନାଁ ଥିଲା ବିମ୍ବାଧର ଜେନା କିନ୍ତୁ ସେ 'ଜେନା' ସାଙ୍ଗିଆକୁ ପରିବର୍ତ୍ତନ କରି 'ବର୍ମା' ଅର୍ଥାତ୍ ବିମ୍ବାଧର ବର୍ମା ନାମରେ ନିଜକୁ ପରିଚିତ କରାଇଥିଲେ । ଏ ପର୍ଯ୍ୟନ୍ତ ତାଙ୍କ ପ୍ରତିଭାର ମୂଲ୍ୟାୟନ ଠିକ୍‌ଭାବେ ହୋଇନାହିଁ । ଜଣେ ବରେଣ୍ୟ ଚିତ୍ରକର ଭାବେ ଆମ୍ଭେମାନେ ତାଙ୍କୁ ଚିତ୍ରିତ କରିଛୁ ସିନା କିନ୍ତୁ ତାଙ୍କ ସାରସ୍ୱତ ସୃଷ୍ଟି ସମ୍ପଦର ଯଥାର୍ଥ ସମୀକ୍ଷା କରିନାହୁଁ । 'ପତିପତ୍ନୀ' ଉପନ୍ୟାସ ଦୁଷ୍ପ୍ରାପ୍ୟ ଥିଲା । ତାହାକୁ ପୁଣିଥରେ ପାଠକମାନଙ୍କ ନିକଟକୁ ଆଣିବାର ସ୍ୱପ୍ନ ସାକାର ହେଇଛି । ମୋ ଜନ୍ମମାଟିର ଗୌରବ ଶିଳ୍ପୀଗୁରୁ ବିମ୍ବାଧର ବର୍ମାଙ୍କ ଏହି କ୍ଲାସିକ୍ ସୃଷ୍ଟିକୁ ଫ୍ରେଣ୍ଡସ୍ ପବ୍ଲିଶର୍ସ ନୂତନ ଭାବେ ପ୍ରକାଶ କରିଛନ୍ତି । ଏହା ସବୁଠାରୁ ଆନନ୍ଦର କଥା । ଉପନ୍ୟାସର ପ୍ରାରମ୍ଭରେ ଶିଳ୍ପୀଗୁରୁ ବିମ୍ବାଧର ବର୍ମାଙ୍କ ଅଙ୍କିତ କେତୋଟି ସାର୍ଥକ ଚିତ୍ର ପ୍ରଦାନ କରାଯାଇଛି ।

ବର୍ମା ପରିବାରର ସୁଯୋଗ୍ୟ ଦାୟାଦ ଶ୍ରୀମତୀ ସୁଧାଂଶୁବାଳା ସ୍ୱାଇଁ ଓ ତାଙ୍କ ସ୍ୱାମୀ ଭାରତ ସରକାରଙ୍କ ଇଣ୍ଟେଲିଜେନ୍ସ୍ ବ୍ୟୁରୋର ଉଚ୍ଚପଦସ୍ଥ ଅଧିକାରୀ ଶ୍ରୀ ଦେବେନ୍ଦ୍ରନାଥ ସ୍ୱାଇଁଙ୍କ ସହଯୋଗ ଏହି କାର୍ଯ୍ୟଟିକୁ ତ୍ୱରାନ୍ୱିତ କରିଛି । 'ପତିପତ୍ନୀ'ର ଚତୁର୍ଥ ସଂସ୍କରଣର ଶୀଘ୍ର ପ୍ରକାଶନ ପାଇଁ ଓଡ଼ିଶାର ମର୍ଯ୍ୟାଦାବନ୍ତ ପ୍ରକାଶନ ସଂସ୍ଥା ଫ୍ରେଣ୍ଡସ୍ ପବ୍ଲିଶର୍ସର ପ୍ରାଣପ୍ରତିଷ୍ଠାତା ଶ୍ରୀଯୁକ୍ତ ସହଦେବ ପ୍ରଧାନଙ୍କ ଆଗ୍ରହ ଓ ଉଦ୍ୟମ ମୋତେ ଅଭିଭୂତ କରିଛି । ଅନ୍ତରଙ୍ଗ ଶ୍ରୀ ହିମାଂଶୁ ପ୍ରଧାନ ଓ ଶ୍ରୀ ସୁଧାଂଶୁ ପ୍ରଧାନଙ୍କ ପ୍ରଚେଷ୍ଟା ଏ କ୍ଷେତ୍ରରେ ସ୍ମରଣୀୟ । ଏହି ଅବସରରେ ସମସ୍ତଙ୍କ ସାହାଯ୍ୟ, ସହଯୋଗ ଓ ଶୁଭେଚ୍ଛା ପାଇଁ କୃତଜ୍ଞତା ଜ୍ଞାପନ କରୁଛି ।

ପୂର୍ବପରି 'ପତିପତ୍ନୀ' ପାଠକୀୟ ଶ୍ରଦ୍ଧା ଓ ଶୁଭେଚ୍ଛା ପାଇବ, ଶିଳ୍ପୀଗୁରୁ ବିମ୍ବାଧର ବର୍ମାଙ୍କ ସାରସ୍ୱତ କୃତିର ମୂଲ୍ୟାୟନରେ ଏହା ମଧ୍ୟ ସହାୟକ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

ଦୋଳପୂର୍ଣ୍ଣିମା
୨୨ ମାର୍ଚ୍ଚ, ୨୦୦୮

ବିଜୟାନନ୍ଦ ସିଂହ



ପାନ୍ଥ ବନିତା



ଦେବଦାସୀ (ଆରତୀ)

## ଏକ

ତାନର ସମନ୍ୱୟ କରି, ଗୋଟିଏ ସୁର୍‌ର ମୋଡ଼୍ ଭାଙ୍ଗୁଭାଙ୍ଗୁ ଧରିଥିବା ଟର୍ଚ୍ଚ ଲାଇଟ୍ ଉପରେ ନଖାଗ୍ର ଚାଳନ କରି, ଶୁଭେନ୍ଦ୍ର ଚାହିଁଲା ତା'ର ସମ୍ମୁଖକୁ । ଆଗରେ ଛୋଟ କାଳିଆ ପାହାଡ଼ ପରି ଛିଡ଼ାହୋଇଛି ସେପାରି ଘାଟର ବଡ଼ ବରଗଛ । ପଛକୁ ତା'ର ଘନ କୁହେଳିକାର ଅନ୍ତରାଳରେ ଗଛସବୁ ମିଶିଯାଇଛି ଦୂର ଦିଗ୍‌ବଳୟର ଦେହରେ ।

ଜ୍ୟେଷ୍ଠମାସର ସନ୍ଧ୍ୟା ଗଡ଼ିଯାଇଛି । ଦିବସର ଘୋର ନିଷ୍ଠୁରତାକୁ ପ୍ରତିବାଦ୍ କରିବାକୁ ଯାଇ, ତାହାର ଧକ୍‌କା ସହି ନପାରି, ରାତ୍ରି ପୃଥିବୀ ଉପରେ ପଡ଼ିଯାଇଛି ମୂର୍ଚ୍ଛିତା ହୋଇ । ପ୍ରାୟ ଦୟିତପରି ଚନ୍ଦ୍ର ତାହାର ଦେହରୁ ଅନ୍ଧାର-ଶାଢ଼ିଟି ଉନ୍ମୋଚନ କରି, ହସିହସି ନିଜର କଅଁଳ ଶୀତଳ କର ତା' ଉପରେ ବୁଲାଇଦେଉଛି । ଗୋଟିଏ ସୁନ୍ଦର ଧୂସର ବର୍ଣ୍ଣର ଗାଲିଚା ବିଛାଇଦେଲା ପରି ଦିଶୁଛି ନଦୀଶଯ୍ୟା । ସେହି ଶଯ୍ୟା ଉପରେ ବସିଛି ଶୁଭେନ୍ଦ୍ର ବହୁକ୍ଷଣ ହେଲା ।

ପଞ୍ଚାଏ ନିଶାଚର ପକ୍ଷୀ ସଶବ୍ଦରେ ଉଡ଼ି ଚାଲିଗଲେ ଉପରେ । ଉପରକୁ ଚାହିଁ ଦେଖିଲା ଶୁଭେନ୍ଦ୍ର ଖଣ୍ଡେ କଳା ବର୍ଷୁକ ବଉଦ ଚନ୍ଦ୍ର ଉପରେ ମାଡିଯାଉଛି ।

ଏହି ସମୟରେ ଗୋଟିଏ ଛୋଟ ଆଲୁଅ ସେପାରି ବନ୍ଧ ଉପରୁ ଧୀରେ ନଦୀ ଭିତରକୁ ଗତିକଲା ।

କ୍ଷଣକ ପରେ ଦେଖାଗଲା, ଯେପରି କେତେଗୁଡିଏ ଲୋକ ଆସୁଛନ୍ତି । ପୁଣି କ୍ଷଣକ ପରେ ଶୁଭିଲା ଲୋକମାନଙ୍କର କଥାବାର୍ତ୍ତାର ଶବ୍ଦ । ତାହା କ୍ରମେ ନିକଟତର ହେବାରୁ ଜଣାଗଲା, ଏମାନେ କ'ଣ ଗୋଟିଏ ସ୍ଥୁଳ ପଦାର୍ଥ ବହନ କରି ଆଣୁଛନ୍ତି ବୋଲି ।

ଅନୁମାନ ସ୍ୱଚ୍ଛ ହୋଇଆସିଲା ଶୁଭେନ୍ଦ୍ରର । ସେ ଶୁଣିଥିଲା ଆରପାରିରେ କଲେରା ଲାଗିଛି ବୋଲି । ଅନ୍ୟମନସ୍କ ହୋଇ ସେ ଆଖି ଫେରାଇଆଣିଲା ସେ ଦିଗରୁ । ଭାବିଲା, କାହାର ଆଜି ଏ ଦୁନିଆ-ରଙ୍ଗମଞ୍ଚରୁ ଅଭିନୟ ସରିଯାଇଛି । ଟର୍ଚ୍ଚଟା

ଟିପି ଚାହିଁଲା ହାତକୁ, ସାଢ଼େଆଠଟା ବାଜିଯାଇଛି । ଟିକିଏ ନିଃସଙ୍ଗତା ଅନୁଭବ କଲା । ଉଠି ଛିଡାହୋଇ ଗୃହାଭିମୁଖରେ ଅଳସ ମନ୍ଥର ପଦକ୍ଷେପ କଲା । ପଛରୁ ଶୁଭିଲା, ସେହି ଲୋକମାନଙ୍କର ବିଳାପ ଚିତ୍କାର ।

ଶୁଭେନ୍ଦ୍ର ସେହିପରି ପଦଚାଳନ କଲା–ଚାରି ପହୁଣ୍ଡ ଆଗକୁ । ପୁଣି ଶୁଭିଲା କ୍ରନ୍ଦନର ସ୍ୱର । ସ୍ୱର କ୍ରମେ ବଢ଼ିବାକୁ ଲାଗିଲା । ଶୁଭେନ୍ଦ୍ର ଉତ୍‌କର୍ଣ୍ଣ ହୋଇ ଶୁଣିଲା । ନିଜ ଚେତନାର ଅଜ୍ଞାତରେ ସେ ବୁଲିଚାହିଁଲା ପଛକୁ । ଦେଖିଲା, କିଛି ଦୂରରେ ଲୋକଗୁଡ଼ିଏ ଏକତ୍ର ହୋଇ, ବୋଧହୁଏ ଶବଟିକୁ ଘେରି, ତାକୁ ଶେଷ ବିଦାୟ ଦେଉଛନ୍ତି ।

ଆତ୍ମୀୟସ୍ୱଜନର ଏ ବିଦାୟ କେଡ଼େ ମର୍ମନ୍ତୁଦ, କେଡ଼େ ଶୋକାବହ !

ତା'ର କୋମଳ ମନରେ ଯାଇ ବାଜିଲା ସେହି ଶୋକର ଆଘାତ । ଆଖି ତା'ର ଛଳଛଳ ହୋଇଗଲା, ବାଷ୍ପରୁଦ୍ଧ ହୋଇଗଲା ତା'ର କଣ୍ଠ । ସେ ବସିପଡ଼ିଲା ସେହିଠାରେ । ତା' ମନରେ ତାହାର ସ୍ୱର୍ଗତ ପିତାମାତାଙ୍କର ସ୍ମୃତି ଜାଗ୍ରତ ହୋଇ ତାହାକୁ ଗଭୀର ଦୁଃଖରେ ଅଭିଭୂତ କରିଦେଲା । ଅଶ୍ରୁ ଝରଝର ହୋଇ ବୋହିଗଲା ତା'ର ଗଣ୍ଡରେ । ସେ ଭୁଲିଗଲା ସ୍ଥାନକାଳ, ଭୁଲିଗଲା ମଧ୍ୟ ନିଜକୁ ପିତାମାତାଙ୍କର ସେହି ସ୍ମୃତିରେ ।

ତା'ର ବୋଧଶକ୍ତି ଫେରିଆସିଲା–ଯେତେବେଳେ କ୍ରନ୍ଦନର ରୋଳ ଓ ମର୍ମଦାହକ ଶୋକଜନିତ ଚିତ୍କାର ଘନୀଭୂତ ହୋଇ ସ୍ଥାନଟିକୁ ଅଧୀର, ବ୍ୟାକୁଳିତ କରିଦେଲା ।

ସେ ନିଜର ଶୋକୋଚ୍ଛ୍ୱାସକୁ ଦମନ କରି, ଲୁଗାକାନିରେ ମୁହଁ ପୋଛି ସେହି ଆଡକୁ ଚାହିଁଲା । ଦେଖିଲା, ଦୁଇଜଣ ଲୋକ ଗୋଟିଏ ସାଳଙ୍କାରା ନାରୀ ମୂର୍ତ୍ତିକୁ ସବାରି ମଧ୍ୟରୁ ବାହାର କରୁଛନ୍ତି । ପାଖରେ ଥିବା ଆଲୋକରଶ୍ମି ପଡିଛି ରମଣୀର ବଦନ ଆଉ ବକ୍ଷସ୍ଥଳରେ ।

ନଦୀବକ୍ଷକୁ ସନ୍ତପ୍ତ କରି, ସମସ୍ତ କୋଳାହଳକୁ ଭେଦ କରି ଜଣକର ଉଚ୍ଚ ମର୍ମଭେଦ କରୁଣ କ୍ରନ୍ଦନ ଧ୍ୱନି ଉଚ୍ଛୁଳିପଡୁଛି ।

ସେ ଅବାକ୍ ହୋଇ ଚାହିଁ ରହିଲା ସେହି ଆଡ଼େ । ମନ ତା'ର ସ୍ୱତଃ ଆକୃଷ୍ଟ ହୋଇଉଠିଲା ସେହି ଦିଗକୁ । ସେ କିଛି ଠିକ୍ କରିପାରିଲା ନାହିଁ । ତାର କେବଳ ସନ୍ଦେହ ହେଲା ସବାରିରେ ଶବ ଘେନି ଆସିଛନ୍ତି କାହିଁକି ! ସେ ଅନିଚ୍ଛାସତ୍ତ୍ୱେ ଛିଡା

ହୋଇ ଧୀରେଧୀରେ ଅଗ୍ରସର ହେଲା ସେହି ଆଡକୁ, ପହଞ୍ଚି ଜଣକୁ ଧରି ପଚାରିଲା– ଘଟଣା କ'ଣ ?

ବାହକ ଜଣେ ବ୍ୟଗ୍ରଭାବରେ ତା ପାଖକୁ ଆସି ବ୍ୟାକୁଳ ହୋଇ କହିଲା–

"ଦେଖନ୍ତୁ ବାବୁ, କ'ଣ ହେଲା, ଆମେ ତ କିଛି ବୁଝିପାରୁନୁ କି କଥା ହେଲା, କଣ କରିବୁ !"

ସମସ୍ତେ ଆସି ତାକୁ ଘେରିଗଲେ ।

ତହିଁ ମଧ୍ୟରୁ ଜଣେ ବାଳକ ଆହୁରି ଉଚ୍ଚ ସ୍ୱରରେ କାନ୍ଦିଉଠିଲା । ଶୁଭେନ୍ଦ୍ର ବଡ଼ ବିବ୍ରତ ହୋଇପଡିଲା । ସମସ୍ତେ ଶୋକରେ, ଭୟରେ ଏପରି କାତର ହୋଇପଡ଼ିଥିଲେ ଯେ କାହାର ତୁଣ୍ଡରୁ ବୁଝାଇ କହିଲା ଭଳି କଥା ପଦେ ବି ବାହାରିଲା ନାହିଁ ।

ଶୁଭେନ୍ଦ୍ର ସେମାନଙ୍କ କଥାରୁ କେବଳ ଏତିକି ବୁଝିଲା ଯେ ବୋହୂଟି ଶାଶୁ ଘରକୁ ଯାଉଯାଉ ବାଟରେ ତା'ର ଏହି ଦଶା ଘଟିଛି, ଏହି ଶୋଚନୀୟ ମୃତ୍ୟୁକୁ ବରଣ କରିଛି ।

ସେ ନ୍ୟାୟଅନ୍ୟାୟ ବିଚାର ନ କରି ବାଲିଶଯ୍ୟାରେ ଶାୟିତା ସେହି ରମଣୀ ନିକଟକୁ ଅଗ୍ରସର ହେଲା । ସମସ୍ତେ ବାଟ ଛାଡିଦେଲେ । ଜଣେ ଆଲୋକ ଦେଖାଇ ମିନତିଭରା ଆକୁଳ କଣ୍ଠରେ କହିଲା, "ଟିକେ ଦେଖନ୍ତୁ ବାବୁ, ଜୀବନ ଥିଲା ପରି ତ ଶୋଇଛି–ଆହା, କଣ ହେଲାରେ !"

ଶୁଭେନ୍ଦ୍ର ଟର୍ଚ୍ଚଟି ଟିପିଧରିଲା ତରୁଣୀ ଉପରେ । ଜଣାଗଲା, ଯେପରି ସନ୍ଧ୍ୟାମଳିନ ଫୁଲବଗିଚା ଉପରେ ସୌଦାମିନୀ ସ୍ଥିର ହୋଇ ଅଟକିଗଲା ।

ଶୁଭେନ୍ଦ୍ରର ଆଖି ତରୁଣୀ ଉପରେ ପଡିଲା କ୍ଷଣି ସେ ବିସ୍ମୟରେ ସ୍ତମ୍ଭିତ, ଆଶ୍ଚର୍ଯ୍ୟରେ ଅଭିଭୂତ ହୋଇଗଲା । ତା'ର ଚକ୍ଷୁ ନିଷ୍କ୍ରିୟ, ବାକ୍‌ଶକ୍ତି ମୂକ ହୋଇଗଲା । ସେ ମୂଢ଼ପରି କେବଳ ବିସ୍ଫାରିତ ଆଖିରେ ଚାହିଁରହିଲା ।

ଏତେ ରୂପ ନାରୀ ଦେହରେ ଯେ ବିକଶିତ ହୁଏ, ସେ କଳ୍ପନା ବି କରିପାରିଲା ନାହିଁ । ମୁହୂର୍ତ୍ତେ ପଲକହୀନ ଭାବରେ ଚାହିଁ ତରୁଣୀ ନିକଟରେ ବସିପଡ଼ି ଅତି ସଙ୍କୋଚର ସହିତ ନିଜ ହାତ ଭିତରକୁ ତାର ହାତନେଇ ନିଶ୍ଚଳ ଓ ମନୋଯୋଗ ସହକାରେ ନାଡୀର ଗତି  ପରୀକ୍ଷା କଲା । କୌଣସି ଆଭାସ ପାଇଲା ନାହିଁ । ପୁଣି ନାକ ନିକଟରେ ହାତ ଦେଇ ଦେଖିଲା, କିଛି ପାଇଲା ନାହିଁ । ମୁହଁ ଫେରାଇ ନିରାଶ କଣ୍ଠରେ କହିଲା–

"କିଛି ତ ଆଶା ଦେଖାଯାଉନାହିଁ । ତେଣୁ ମୁଁ ଭାବୁଛି, ଡାକ୍ତର ଡାକି ଦେଖାଇଲେ ହୁଅନ୍ତା !"

ସେମାନଙ୍କ ଭିତରୁ ଜଣେ କହିଲା ଭଗ୍ନ କଣ୍ଠରେ–

"ନାହିଁ ବାବୁ, ସେ କ'ଣ ଆଉ ଅଛି ? ସେ କେତେବେଳୁ ଗଲାଣି । ମୁଁ ଠିକ୍ ଜାଣିଛି । ଯେତେବେଳୁ ମୋତେ କାନ୍ଧକୁ ଓଜନ ଲାଗିଲାଣି, ମୁଁ ସେତେବେଳୁ ଭାବୁଛି, ଇଏ କ'ଣ, ଏମିତି ଓଜନ ଲାଗୁଛି କ'ଣ ! ଜୀବନ ଥିବା ମଣିଷଟା କ'ଣ ଏତେ ଓଜନ ହୁଏ କି ? ଛାଡ, ତା' ସେରକ ତ ପୂରିଗଲା, ଆଉ କିଏ ଅଟକେଇ ରଖିବ ତାକୁ ! ସେ ଡାକ୍ତରଫାକ୍ତର ମିଛ କଥା । ସେ ଖାଲି କଉଡ଼ି ଖାଇବା କଥା ବାବୁ, କିଛି ହେଲେ ଫଳନାହିଁ । ମୁଁ ଏମିତିକା ମରଣ ଦଶ ଦଶଟା ଦେଖିଲିଣି ମୋ' ଆଖିରେ, ମୁଁ ଜାଣିପାରୁନାହିଁ କ'ଣ ? ଯା ଦେହରେ ଆଉ ଜୀବ ଅଛି ଯେ ଡାକ୍ତର ଡାକିବ ? ଡାକ୍ତର ନା ତା' ବାପ ଆକୁ ବଞ୍ଚାଇବ !"

ଶୁଭେନ୍ଦ୍ର ମଧ–ଆଉ ତାକୁ ଯେତିକି ଜଣାଥିଲା–ଛାତିର ସ୍ପନ୍ଦନ, ଆଖି ଡୋଳାର ଗତି, କେଉଁଥିରୁ ହେଲେ ଜୀବନର ସନ୍ଧାନ ପାଇଲା ନାହିଁ । ନିରାଶାରେ ଗୋଟିଏ ଗଭୀର ନିଃଶ୍ୱାସ ତା' ନାସିକାରୁ ବାହାରି ପବନରେ ମିଶିଗଲା ।

ସମସ୍ତେ ଏକାବେଳେକେ ଉଦ୍‌ବିଗ୍ନ ହୋଇ ପଚାରିଲେ–

"କ'ଣ ଦେଖିଲ ବାବୁ ?"

"ନାହିଁ, କିଛି ବୁଝି ହେଲାନାହିଁ" ଶୁଭେନ୍ଦ୍ର ଭଗ୍ନ କଣ୍ଠରେ କହିଲା । "ତେବେ ଡାକ୍ତରଙ୍କୁ ଡାକିବା ନିତାନ୍ତ ଉଚିତ ବୋଲି ମୁଁ ମନେ କରୁଛି । ଅନ୍ଧଭାବରେ କିଛି ଗୋଟାଏ କରିବସିବା ଉଚିତ ନୁହେଁ ।"

ତରୁଣୀର ଭାଇ, ଯେ କି ବସି ବିକଳ ସ୍ୱରରେ କ୍ରନ୍ଦନ କରୁଥିଲା ସେ ଆର୍ତ୍ତକଣ୍ଠରେ ପଚାରିଲା–

"ଡାକ୍ତର ଏଠି କେଉଁଠୁ ଆସିବ ବାବୁ, ନିକଟରେ କଣ କିଏ ଅଛି ?"

ସହାନୁଭୂତିପୂର୍ଣ୍ଣ ସ୍ୱରରେ ଶୁଭେନ୍ଦ୍ର କହିଲା–

"ହଁ ଅଛନ୍ତି, ଖୁବ୍ ଅଳ୍ପ ଦୂରରେ ନୁହେଁ, ତେବେ ଦୁଇମାଇଲ୍ ଦୂରରେ । ଯଦି..."

ସେହି ଲୋକଟି କହିଉଠିଲା–

"ଆଉ କ'ଣ ଜୀବନ ଅଛି ବାବୁ, ବୃଥା ସେ ଡାକ୍ତର କଥା । ଖାଲି କାଠ ଠାରୁ ଆଉ କ'ଣ ମିଳିବ! ଏହି ଦେଖୁନାହାନ୍ତି ।" ଏହା କହି ସେ ତରୁଣୀର ହାତଗୋଡକୁ ହଲାଇଦେଇ ଦେଖାଇଦେଲା । ପାଗଳ ହେଲେ ବାବୁ, ସେ ଆଉ ବଞ୍ଚିବ ? କାହିଁକି ଆଉ..."

ଶୁଭେନ୍ଦୁ ଏହି ଲୋକଟିର ଅଭିଜ୍ଞତା ଉପରେ କୌଣସି ପ୍ରକାର ହସ୍ତକ୍ଷେପ କରିବାକୁ ସାହସ କଲା ନାହିଁ । ଭାବିଲା, ହୁଏତ ଏହାର କଥା ସତ୍ୟ ବି ହୋଇପାରେ । ସେ ଆଉ କିଛି ନ କହି ନଦୀଶଯ୍ୟାରେ ଶାୟିତା ରୂପସୀକୁ କିଛି ସମୟ ଚାହିଁ ବ୍ୟଥିତ ମନରେ ତଳକୁ ମୁହିଁ କରି ଫେରିଆସିଲା ।

ଏହି ସମୟରେ ବର୍ଷା ଟିପିଟିପି ହୋଇ ପଡିବାରୁ ସେମାନେ 'ବର୍ଷା ହେଲା, ବର୍ଷା ହେଲା' କହି କୋଳାହଳ କରିଉଠିଲେ ।

ଜଣେ କହିଲା–

"ମୁର୍ଦ୍ଦାରକୁ ଘେନି କ'ଣ ଏତେବାଟ ଫେରିଯିବା ?"

ଅନ୍ୟ ଜଣେ ହତାଶାର ନିଃଶ୍ୱାସ ତ୍ୟାଗ କରି କହିଲା–

"ହଁ, ଫେରାଇନେଲେ ଆଉ ଉଠି କଥା କହିବ ?"

ଅନ୍ୟ ଜଣେ କହିଲା–

"ହଁ, ଆଉ କଥା କହିବ ? ତା' ସେରକ ତ ପୂରିଲା । ସେ ଚାଲିଗଲା । ଏମିତି ସୁଖର ମରଣ କିଏ ମରିବ ! କା' ଭାଗ୍ୟରେ କ'ଣ ଅଛି ।"

କହି ଅପର ଏକ ବ୍ୟକ୍ତିର ମୁହଁକୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁରହିଲା ।

ଅପର ଜଣକ ବ୍ୟଗ୍ରସ୍ୱରରେ କହିଲା–

"ଆରେ ଚାହୁଁଛୁ ଆଉ କ'ଣ ? ଆମେ କ'ଣ ମୁର୍ଦ୍ଦାର ବୋହିବା ବାଛନ୍ଦ ହବାକୁ ? ଦିଅ, ବେଗିବେଗି କ'ଣ କରିବାରେ କର । ମେଘ ଯେ ମାଡ଼ିଅଇଲାଣି ।"

ଏହିପରି ତର୍କବିତର୍କ ପରେ ଯୁବତୀକୁ ସେଠାରେ ପକାଇଦେଇ ଯିବାକୁ ସ୍ଥିର କରି, ତା' ଦେହରୁ କେବଳ ପିନ୍ଧିବା ଲୁଗା ଆଉ ହାତର ଶଙ୍ଖା ଦି'ପଟ ଛାଡି ସବୁ ଅଳଙ୍କାର ଓହ୍ଲାଉଓହ୍ଲାଉ ଭୟଙ୍କର ଝଡ଼, ବର୍ଷା, ବିଦ୍ୟୁତ, ଘଡ଼ଘଡ଼ିରେ ଦିଗ୍‌ବିଦିଗ ପ୍ରକମ୍ପିତ ହେବାକୁ ଲାଗିଲା । ବାହକମାନେ ସବାରି ଘେନି ଯେତେ ଶୀଘ୍ର ପାରନ୍ତି, ଅଣନିଃଶ୍ୱାସୀ ହୋଇ ଫେରିପଳାଇଲେ ।

ଯୁବତୀଟି ଏକାକୀ ସେହି ନଦୀଶଯ୍ୟାରେ ପଡ଼ିରହିଲା । ଏ ଘୋର ପ୍ରଳୟ ତା' ପାଖରେ ସମ୍ପୂର୍ଣ୍ଣ ଅର୍ଥହୀନ ପରି ମନେହେଲା । ଫେରିଆସି ଶୁଭେନ୍ଦ୍ର ନଦୀବନ୍ଧ ଉପରେ ହେଲାକ୍ଷଣି ବର୍ଷା ଓ ଅନ୍ଧାରରେ ତାକୁ ବାଟ ଦିଶିଲା ନାହିଁ । ସେ ଦୌଡ଼ି ଆସିଥିଲେ ନତିନ୍ତି ଘରେ ପହଞ୍ଚିପାରିଥାନ୍ତା; କିନ୍ତୁ ସେହି ଯୁବତୀଟିର ଆକସ୍ମିକ ଶୋଚନୀୟ ମୃତ୍ୟୁ ବିଷୟକ ଚିନ୍ତା ତା' ହୃଦୟରେ ଏପରି ଆଘାତ କରିଥିଲା ଯେ ଏ ଝଡ଼ ଘଡଘଡି ବିଚଳିତ କରିପାରିଲା ନାହିଁ ତାକୁ । ପାଞ୍ଚ ମିନିଟ୍‌ର ରାସ୍ତା ତାକୁ ପ୍ରାୟ ଲାଗିଲା ଅଧଘଣ୍ଟାଏ ।

## ଦୁଇ

ଶୁଭେନ୍ଦ୍ରର ପିତା ସୁବାହୁ ରଣସିଂହ ଜଣେ ଖ୍ୟାତନାମା ଲୋକ ଥିଲେ । ସେ ତାଙ୍କର ଏକମାତ୍ର ପୁଅକୁ ଏମ୍.ଏ. ପର୍ଯ୍ୟନ୍ତ ପଢ଼ାଇଥିଲେ । ତାହା ବ୍ୟତୀତ ସଙ୍ଗୀତ, ସାହିତ୍ୟରେ ଖ୍ୟାତନାମା ବ୍ୟକ୍ତିମାନଙ୍କ ସହିତ ମିଶି ତାଙ୍କଠାରୁ ଗୁଣ ଶିକ୍ଷା କରିବାକୁ ସୁବିଧା ଓ ସ୍ୱାଧୀନତା ମଧ ଦେଇଥିଲେ । ପୁତ୍ରକୁ ଯୋଗ୍ୟ କରିବା ନିମିତ୍ତ ସେ ଯେତେ ଅର୍ଥ ବ୍ୟୟ କରିଥିଲେ, ତାହା ଅପେକ୍ଷା ତାକୁ ସମ୍ଭ୍ରାନ୍ତ ଭାବରେ ଚଳିବା ପାଇଁ ଅଧିକ ସମ୍ପତ୍ତିର ଉତ୍ତରାଧିକାରୀ କରିଗଲେ ତାଙ୍କର ମୃତ୍ୟୁ ପରେ । ବ୍ୟାଙ୍କ୍‌ରେ ନଗଦ ପାଞ୍ଚଲକ୍ଷ ଟଙ୍କା ଓ ବର୍ଷକୁ ପଚିଶ ହଜାର ଟଙ୍କା ଆୟର ଜମିଦାରୀ ଏବଂ ଚଷଜମି ପ୍ରାୟ ହଜାର ଏକର ।

ପିତାଙ୍କ ମୃତ୍ୟୁ ପରେ ଶୁଭେନ୍ଦ୍ର ନାଏବ ଗୁମାସ୍ତାଙ୍କ ଉପରେ ସମ୍ପତ୍ତିର ରକ୍ଷଣାବେକ୍ଷଣର ଭାର ଦେଇ, ନିଜେ ଅଧିକାଂଶ ସମୟ ଆୟତ୍ତ କରିଥିବା ଗୁଣଗୁଡ଼ିକୁ ଘେନି ଅତିବାହିତ କରେ । ସେଥିପାଇଁ ସେ ଏହି ନଦୀକୂଳରେ ଥିବା ତା'ର ପିତାଙ୍କର ନିର୍ମିତ ଗୋଟିଏ ସୁଦୃଶ୍ୟ ଅଟ୍ଟାଳିକାକୁ ସାଧନାର ଉପଯୁକ୍ତ ସ୍ଥାନ ବୋଲି ବାଛିନେଇଛି ।

ଘରଟି ଦ୍ୱିତଳ । ତଳ ମହଲାର ସୁସଜ୍ଜିତ ଡ୍ରଇଂରୁମ୍‌ଟିକୁ ଛାଡ଼ି, ଅନ୍ୟ କୋଠରିମାନଙ୍କରେ ଜମିଦାରି ସଂକ୍ରାନ୍ତ କାଗଜପତ୍ର ଏବଂ ନାନାପ୍ରକାର ଗୃହୋପକରଣ ପୂର୍ଣ୍ଣ ହୋଇଛି । ତା' ଛଡା ରୋଷାଇଘର, ଗାଧୁଆଘର, ଚାକରବାକରଙ୍କ ଘର ଆଉ ଜମିଦାରୀ କର୍ମଚାରୀମାନଙ୍କ ଘର ପ୍ରଭୃତି, ଏହି ତଳ ମହଲାର ଉତ୍ତର ଆଡ଼କୁ ଲାଗିରହିଛି । ସମ୍ମୁଖ ଦକ୍ଷିଣ ପାଖ ଗେଟ୍ ନିକଟରୁ ଘରଯାଏ ନାନାପ୍ରକାର ଦେଶୀ ବିଦେଶୀ ଫୁଲଗଛରେ ପୂର୍ଣ୍ଣ । ଗେଟ୍‌ଠାରୁ ଅଳ୍ପ ବ୍ୟବଧାନରେ ନଦୀ ।

ଶୁଭେନ୍ଦ୍ରର ଏ ତଳ ମହଲାରେ କୌଣସି କାରବାର ନ ଥାଏ । ଉପରେହିଁ ତା'ର ସବୁ । ଉପରେ ହଲ୍‌ଟିର ପରିପାଟୀ ଦେଖିଲେ ଶୁଭେନ୍ଦ୍ରର ସୁରୁଚି ଓ

ସୌନ୍ଦର୍ଯ୍ୟବୋଧରେ ଯଥେଷ୍ଟ ପରିଚୟ ମିଳେ । ଗୃହ ଚତ୍ୱରରେ ବିଚିତ୍ର ରଙ୍ଗର ସୁନ୍ଦର ଗାଲିଚ୍ଛ ବିସ୍ତୃତ । ମଝିରେ ସୁଦୃଶ୍ୟ ଅତି ବୃହତ୍ ଟେବୁଲ ଉପରେ ସୁନ୍ଦର ଚୈନିକ ଫୁଲଦାନିରେ ସଜ୍ଜିତ ଗୋଲାପଗଛ । ଚତୁର୍ପାର୍ଶ୍ୱରେ ଚେୟାର ଆଉ ସୋଫାର ଆଧିକ୍ୟ ହେଲେହେଁ ସୁସଜ୍ଜିତ । ହଲ୍‌ର ଗୋଟିଏ କୋଣକୁ ଲାଗି ଅନୁଚ୍ଚ କାଷ୍ଠ ବେଦିକା ଉପରେ ବହୁ ପ୍ରକାର ବାଦ୍ୟଯନ୍ତ୍ର ସାର୍ଟିନ୍ କନାର ଖୋଳରେ ଆବୃତ ହୋଇ ରଖାଯାଇଛି । ଅନ୍ୟ କୋଣମାନଙ୍କରେ ମଖମଲ କନାର ପୋଷାକ ମଧ୍ୟରେ ସ୍ଥାନ ପାଇ, ଯଥାକ୍ରମେ–ବୀଣା, ତମ୍ବୁରା ଓ ଏସ୍‌ରାଜ ପ୍ରଭୃତି ବରମିଜ୍ ବୈଠା ଉପରେ ସୁଶୋଭିତ । ହଲ୍‌ର ଦୁଇକାନ୍ଥରେ ଦୁଇଖଣ୍ଡ ବଡ଼ ତୈଳଚିତ୍ର–ଶୁଭେନ୍ଦ୍ରର ସ୍ୱର୍ଗତ ପିତାମାତାଙ୍କର ଓ ଅପର ଦୁଇକାନ୍ଥରେ ଦୁଇଖଣ୍ଡ ପ୍ରାକୃତିକ ଦୃଶ୍ୟ ।

ଗୋଟିଏ ପାଖରେ ଖଣ୍ଡେ ତକ୍ତପୋଷ ଉପରେ ଗଦି, ତା' ଉପରେ ସୁମସୃଣ ସରୁ ଶୀତଳପଟି ବିସ୍ତୃତ ଏବଂ ଏମ୍ବ୍ରଏଡରିକରା ଖୋଳବିଶିଷ୍ଟ ଗୋଟିଏ ତକିଆ ।

ହଲ୍‌ର ପଶ୍ଚିମପାଖ କୋଠରିଟି ଶୁଭେନ୍ଦ୍ରର ପୋଷାକପତ୍ର, ଟ୍ରଙ୍କ, ସୁଟ୍‌କେଶ ପ୍ରଭୃତି ନାନା ବ୍ୟବହାର୍ଯ୍ୟ ଜିନିଷରେ ପରିପୂର୍ଣ୍ଣ । ପୂର୍ବ ପାଖ କୋଠରିଟି ତା'ର ଶୟନ କକ୍ଷ। ଏକ ପାର୍ଶ୍ୱରେ ବାତାୟନ ନିକଟରେ ପ୍ରଶସ୍ତ ପଲଙ୍କର ସ୍ଥୂଳ ଗଦି ଉପରେ ହାତକାମକରା ସୁଶୁଭ୍ର ବିଛଣାଚ୍ଛଦରର କରଝାଲର୍ ତଳକୁ ଝୁଲିପଡ଼ିଛି । ପଲଙ୍କର ଗୋଟିଏ ପାଖରେ ଡ୍ରେସିଂ ଟେବୁଲ୍; କିନ୍ତୁ ଟେବୁଲ ଉପରେ ପ୍ରସାଧନର ସାମଗ୍ରୀ ପରିବର୍ତ୍ତେ ଥୁଆହୋଇଛି ହୋମିଓପାଥିକ ବାକ୍‌ସ । ଅନ୍ୟ ପାର୍ଶ୍ୱରେ ସେଲ୍‌ଫଟି ସୁଦୃଶ୍ୟ ମୂଲ୍ୟବାନ ପୁସ୍ତକରେ ସୁସଜ୍ଜିତ । ତା' ପାଖକୁ ଗୋଟିଏ ଛୋଟ ତ୍ରିପଦୀ ଟେବୁଲ ଉପରେ ଗୋଟିଏ ସୁନ୍ଦର ଟାଇମ୍‌ପିସ୍ ଏବଂ କେତେଖଣ୍ଡ ଦୈନିକ ଓ ମାସିକ ପତ୍ରିକା । ଦ୍ୱାରବନ୍ଧ ପାଖକୁ ଗୋଟିଏ ଇଜିଚେୟାର୍ ।

ଏହି ସ୍ଥାନଟି ନିର୍ଜନ ଲୋକାଳୟର ଦୂରରେ । ଦେଖିଲେ ଜଣାଯାଏ, ଏହା କୌଣସି ସୌଖୀନ ଧନୀ ବ୍ୟକ୍ତିଙ୍କର ବୋଲି । ଏହାକୁ ଶୁଭେନ୍ଦ୍ରର ପିତା ତାହାଙ୍କର ଜମିଦାରିର ତତ୍ତ୍ୱାବଧାନ ଏବଂ ଗ୍ରୀଷ୍ମକାଳ ଯାପନ ପାଇଁ ନିର୍ମାଣ କରାଇଥିଲେ; କିନ୍ତୁ ଶୁଭେନ୍ଦ୍ର ପ୍ରାୟ ଗ୍ରାମକୁ ନ ଯାଇ ତା'ର ସମସ୍ତ ସମୟ ଏହିଠାରେ କଟାଏ । ପିତାଙ୍କ ମୃତ୍ୟୁ ପୂର୍ବରୁ ତା'ର ମା'ଙ୍କର ମୃତ୍ୟୁ ହୋଇଥିଲା । ଗୋଟିଏ ନ' ଦଶ ବର୍ଷର ଛୋଟ ଭଉଣୀ ଏବଂ ବିଧବା ପିଉସୀ ବ୍ୟତୀତ ତାହାର ନିଜର ବୋଲି ଆଉ କେହି ନାହିଁ । ଭଉଣୀଟି କେତେବେଳେ ଗ୍ରାମରେ ପିଉସୀ ନିକଟରେ, କେତେବେଳେ ବା ଭାଇ ପାଖରେ ଆସି ରହେ । ଏହିବର୍ଷ ଶୁଭେନ୍ଦ୍ର ତାକୁ କଟକରେ କନ୍‌ଭେଣ୍ଟ୍‌ରେ ଛାଡ଼ିବ

ବୋଲି ଠିକ୍ କରିଛି । ବର୍ତ୍ତମାନ ଗୃହର ମାଲିକ ପିଉସୀଙ୍କର ବହୁ ସାଧ ସାଧନା ଓ ମଙ୍ଗଳକାଂକ୍ଷୀ ବହୁ ଆତ୍ମୀୟଙ୍କର ହିତୋପଦେଶ ଏବଂ ବହୁ କନ୍ୟା ପିତାଙ୍କର କନ୍ୟା ଯାଚନା ସବୁ ଉପେକ୍ଷା କରି ଶୁଭେନ୍ଦ୍ର ତା'ର ସଙ୍ଗୀତକଳା ସାଧନାରେ ବ୍ୟସ୍ତ ।

ସେ ତା'ର ସମୟର ଅର୍ଦ୍ଧେକ ଦିଏ ସଙ୍ଗୀତରେ ଆଉଅର୍ଦ୍ଧେକ ଲେଖିବାପଢ଼ିବା ଓ ଫଟୋ ଉଠାଇବାରେ ବ୍ୟୟିତ କରେ ।

ପ୍ରକୃତିର ମନୋହର ଦୃଶ୍ୟ, ଜୀବଜନ୍ତୁ, ନର ନାରୀର ମୁଗ୍ଧକର କଳାପୂର୍ଣ୍ଣ ଗତିଭଙ୍ଗୀ ଦେଖିଲେ ତାହାର ଫଟୋ ଉଠାଇ ନିଜର ଆଲବମ୍ ଶରୀର ବୃଦ୍ଧି କରେ । ଏ ଦିଗରେ ଯେ କାହିଁକି ତା'ର ଏତେ ଆକର୍ଷଣ, ସେ ମଧ୍ୟ ବୁଝିପାରେ ନାହିଁ। କୌଣସି ସୁନ୍ଦର ବସ୍ତୁକୁ ସେ ତ୍ୟାଗ କରି ଯାଇପାରେ ନାହିଁ, ଯେପର୍ଯ୍ୟନ୍ତ ସେ ତାକୁ ଭଲ ଭାବରେ ଉପଲବ୍ଧି ନ କରେ କିମ୍ବା ତା'ର କୌଣସି ନିଦର୍ଶନ ସେ ପାଖରେ ନ ରଖେ । ସେଥିପାଇଁ କେତେକ ସମୟରେ ଅବମାନନା ମଧ୍ୟ ତାକୁ ସହିବାକୁ ପଡ଼େ– ଯେତେବେଳେ ସେ ଚେଷ୍ଟା କରେ କୌଣସି ସୁନ୍ଦରୀର ଫଟୋ ଆଣିବା ପାଇଁ । କାରଣ ଆମ ଦେଶର ଦୁଷ୍ଟ ସମାଜ କେବେହେଲେ କୌଣସି ସୂକ୍ଷ୍ମ ରସପିପାସୁ ପାଇଁ ଟିକେ ମାତ୍ର ଉଦାରତା ଦେଖାଇପାରିନାହିଁ। ତଥାପି ଶୁଭେନ୍ଦ୍ରର ସୌନ୍ଦର୍ଯ୍ୟ-ବାତୁଳ ମନ ସେହି ସୌନ୍ଦର୍ଯ୍ୟ ଆହରଣରୁ କେବେହେଲେ କ୍ଷାନ୍ତ ହୋଇପାରେ ନାହିଁ । ଏହା ବୋଲି ଯେ ସେ କୌଣସି ଦୂଷଣୀୟ କର୍ମ କରିବ ତା ନୁହେଁ, ବରଂଚ ଏହିସବୁ ପତିତ, ହୀନଚେତା ଲୋକଙ୍କ ପାଇଁ ତା'ର ଦୁଃଖ ହୁଏ ଏବଂ ସେ ତା'ର ପ୍ରତିକାରର ଉପାୟ ମଧ୍ୟ ଭାବେ ଓ ବେଳ ପାଇଲେ ଭାବନାକୁ କାର୍ଯ୍ୟରେ ପରିଣତ କରିବାରେ ତ୍ରୁଟି କରେ ନାହିଁ ।

ଶୁଭେନ୍ଦ୍ର ନଦୀରୁ ଫେରିଲା ବେଳେ ସମ୍ପୂର୍ଣ୍ଣ ଭାବରେ ତିନ୍ତିଯାଇଥିଲା । ଘରକୁ ଆସି ଲୁଗା ବଦଳି ଗୋଟିଏ ଆରାମ ଚେୟାର ଟାଣିଆସି ବସିପଡ଼ିଲା ।

ତା'ର କେବଳ ମନେପଡ଼ିଲା ସେହି ଯୁବତୀର କଥା । ସତେ ଯେପରି ତା'ର ଆଖି ଆଗରେ ସେ ଶୋଇରହିଛି ବିପୁଳ ରୂପସମ୍ଭାର ଘେନି । ବେଶଭୂଷାରୁ ଜଣାଯାଉଥିଲା, ଗରିବ ଘରର ଝିଅଟି ପରି; କିନ୍ତୁ ରୂପରେ ସେ ଯେ ସାମ୍ରାଜ୍ଞୀ ! ଚିର ସାମ୍ୟବାଦୀ ଯୌବନଦେବତା ତା'ଠାରେ ପକ୍ଷପାତିତା କରି, ତାଙ୍କର ସୁଯତ୍ନସଞ୍ଚିତ, ବହୁଆକାଂକ୍ଷିତ ଉପାଦାନସବୁ ବାଛିବାଛି, ଯେପରି ରୂପସୀର ଦେହସାରା ଢାଳି ଦେଇଛନ୍ତି । ନାରୀଦେହରେ ଏତେ ରୂପ ଶୁଭେନ୍ଦ୍ର କେବେ ଦେଖି ନାହିଁ, କଳ୍ପନା ବି କରିନଥିଲା । ସେ କେବଳ କବିକଳ୍ପିତ ଉର୍ବଶୀକୁ କଳ୍ପନାରେ ବେଳେ ବେଳେ ଭାବିଛି

ମାତ୍ର–ତେବେ, ତାହା ଯେପରି ସେଲିମ୍-ପତ୍ନୀ ନୂରଜାହାନ୍ ଠାରୁ ଆଉ ଦୂରକୁ ଯାଇପାରିନାହିଁ ।

ଯୁବତୀର ପ୍ରାଣବାୟୁ ଛାଡ଼ିଯାଇଥିଲା, ତଥାପି ରୂପ ତା'ର ଥିଲା ଏତେ ଜୀବନ୍ତ ! ଆଖି ତା'ରି ମୁଦିହୋଇଯାଇଥିଲା; କିନ୍ତୁ ଜଣାଯାଉଥିଲା, ସତେ କି ନବ ବଧୂର ମୁଖଦର୍ଶନ ବେଳେ ଅପରିଚିତ ଲୋକଙ୍କୁ ଆଗରେ ଦେଖି ଲଜ୍ଜାରେ ସେ ଯେପରି ଆଖି ବୁଜିଦେଇଛି । ଆଉ କି ସୁନ୍ଦର ସୁଗଠିତ ସ୍ନିଗ୍ଧ ଢଳଢଳ ସୁକୁମାର ଗଣ୍ଡଦେଶ ତା'ର, ଯେପରିକି ସେହି ଗଣ୍ଡଦେଇ ସେ ବାହ୍ୟ ଘଟଣା ସବୁ ଅନୁଭବ କରି ମନେମନେ ହସୁଥିଲା, ସତେକି ଏହି ମୁହୂର୍ତ୍ତରେ ହସ ତା'ର ପଦାକୁ ଫୁଟି ପଡ଼ିବ ! ଆଉ ତା'ର କରପଲ୍ଲବର ସୁଶୋଭନ ଆଙ୍ଗୁଳି ମାଳ, ସତେକି ସ୍ୱର୍ଣ୍ଣଲତାର ନବୋଦ୍‌ଗତ କୋମଳକଳିଗୁଡ଼ିକ କିଏ ଆଣି ଏକତ୍ର କରିଦେଇଛି !

ଶୁଭେନ୍ଦ୍ରର ମନେପଡ଼ିଲା, ତା'ର ହାତଧରି ସେ ନାଡ଼ୀ ପରୀକ୍ଷା କରୁଥିବା ବେଳେ ସେହି ସୁକୁମାର ଆଙ୍ଗୁଳିଗୁଡ଼ିକ ତା' ନିଜ ହାତପାପୁଲି ଉପରକୁ ଝୁଲିପଡ଼ି ପାପୁଲିକୁ ତା'ର ଆବୃତ କରି ଦେଇଥିଲା । ମନେହେଲା, ଯେପରି ସେ ତାହାର ହାତ ଧରିବା ପାଇଁ ବାରଣ କରି କହିଲା, ଏ ହାତ ମୋର ପୁରୁଷର କର୍କଶ, କଠିନ ହସ୍ତ ପାଇଁ ନୁହେଁ, ଏହା କେବଳ ସ୍ରଷ୍ଟାଙ୍କର ସୁକୋମଳ ପ୍ରବୃତ୍ତିରେ ବହିର୍ବିକାଶ ମାତ୍ର ।

ଶୁଭେନ୍ଦ୍ର ଏତେ ତନ୍ମୟ ଥିଲା ଯେ ନିଜେ ଭାବୁଥିଲେ ମଧ୍ୟ ନିଜ ହାତରେ କର୍କଶତା ପରୀକ୍ଷା କରୁକରୁ ଚମକିପଡ଼ିଲା । ସୋଜା ଭାବରେ ବସି ଟେବୁଲ୍ ଉପରୁ ଖଣ୍ଡେ ବହି ଟାଣିଆଣି ପୃଷ୍ଠା ଓଲଟାଇ କ'ଣ ଖୋଜିବାକୁ ଲାଗିଲା । କ'ଣ ଖୋଜୁଥିଲା ସେ ଜାଣେ ନାହିଁ, ମାତ୍ର ଅବିରାମ ଓଲଟାଇବାରୁ ପୃଷ୍ଠାତକ ସରିଗଲା । ବହିଖଣ୍ଡକ ଟେବୁଲ୍ ଉପରକୁ ପକାଇଦେଇ ସେ ଚେୟାର ଉପରକୁ ପୁଣି ଆଉଜିପଡ଼ିଲା ।

ପୁଣି ସେହି ଭାବନା–

ସେହି ଅକଳଙ୍କ ମୁଖଚନ୍ଦ୍ରମା ତା' ଭାବନା ପଥହର ଉଦିତ ହୋଇ, ଭାବନାକୁ ତାର ଆହୁରି ଉଜ୍ଜ୍ୱଳ କରିଦେଲା । ତା'ର ମନେହେଲା, ଏତେ ରୂପ ଧରି ସେ ପୃଥିବୀକୁ ଏତେ ଅଳ୍ପ ସମୟ ପାଇଁ ଆସିଥିଲା କାହିଁକି ? ତା'ର ଶେଷ ଏପରି, ଏହି ହୀନ ଭାବରେ ହେଲା କାହିଁକି ? ଦିନେ ତ ସମସ୍ତେ ଶେଷ ହେବେ, ଏକଥା ସତ୍ୟ; କିନ୍ତୁ ଏ ଯେଉଁ ଅପରୂପ ରୂପ-ସୃଷ୍ଟି, ବିଧାତାଙ୍କର ରୂପଦକ୍ଷତାର ସୁନିଦର୍ଶନ, ସେ ଲୋକଚକ୍ଷୁ ଉପରକୁ ନଆସି ଏପରି ଅନ୍ଧାରରେ ଫୁଟି ଅନ୍ଧାରରେ ମଉଳିଗଲା କାହିଁକି ?

ଯଦି ଜନ୍ମାନ୍ତର ଥାଏ, ତେବେ କ'ଣ କର୍ମଫଳ ଭୋଗପାଇଁ–କେବଳ ମାତ୍ର ଏହି ଜନ୍ମ ଆଉ ମୃତ୍ୟୁ ରୂପକ ଯନ୍ତ୍ରଣା ଦୁଇଟି ସହିବାକୁ ତା'ର ଜନ୍ମ ହୋଇଥିଲା ? ଜନ୍ମ ସଙ୍ଗେସଙ୍ଗେ ମୃତ୍ୟୁ ଘଟିଥିଲେ ତ କର୍ମଫଳ ଭୋଗହୋଇଯାଇଥାନ୍ତା ! ମଝିରେ ଏତେ ସମୟ ଅବକାଶ ନେବାରେ କି ପ୍ରୟୋଜନ ଥିଲା ? ନା, ଏ ସମୟ ମଧ୍ୟରେ ପୁଣି ସେ କର୍ମଫଳ ସଂଚୟ କରି ପୁଣି ଜନ୍ମହେବ ? ଏହିପରି ନ କଲେ ବିଧାତାର ସୃଷ୍ଟି ଲୋପ ହୋଇଯିବ ପରା ! ଜୀବ ଯଦି ଭଗବାନଙ୍କ ସତ୍ତା ଘେନି ଜନ୍ମ ଲାଭ କରେ, ତେବେ ଭଗବାନ ଗୁଟି ପୋକ ପରି ନିଜକୁ ନିଜେ ଏପରି କଷ୍ଟ ଦିଅନ୍ତି କାହିଁକି ? ଯଦି ଭଗବାନ ସର୍ବଶକ୍ତିମାନ ବୋଲି କିଏ ଥା'ନ୍ତି, ତେବେ ସେ ନିଶ୍ଚୟ ଏତେ ବୋକା ନୁହନ୍ତି ।

ଶୁଭେନ୍ଦ୍ର ବେଦନାର ଗୋଟିଏ ଗଭୀର ନିଃଶ୍ୱାସ ଛାଡ଼ି ସିଗାରେଟ୍‌ଟିଏ ଧରି ଦିଆସିଲି ମାରୁମାରୁ ଭାବିଲା, ବୋଧହୁଏ ବିଧାତା ନିଜ ହସ୍ତର ପଟୁତା ଓ ସୌନ୍ଦର୍ଯ୍ୟ ବୋଧ ଶକ୍ତି ପରୀକ୍ଷା କରିବାକୁ ତାକୁ ଜଗତକୁ ପଠାଇ, ଏହି ଷୋଳବର୍ଷ ଭିତରେ ତାହାର ସମ୍ପୂର୍ଣ୍ଣ ବିକାଶ କରି, ତାଙ୍କର ଗତ ରୂପସୃଷ୍ଟି ସଙ୍ଗରେ ମିଳାଇ ଦେଖିଲେ ଯେ ସେ ତାଙ୍କର ସର୍ବଶ୍ରେଷ୍ଠ ବିକାଶ, ସେଥିପାଇଁ ତାଙ୍କର ଇନ୍ଦ୍ରନୀଳ ଗଠିତ ଗନ୍ତାଘରେ ସମ୍ପାଦି ରଖିଦେବାକୁ ତାକୁ ଏତେ ଚଞ୍ଚଳ ଘେନିଗଲେ ।

ସିଗାରେଟ୍ ଖଣ୍ଡକ ପକାଇଦେଇ ଶୁଭେନ୍ଦ୍ର ଦୁଇହାତ ମୁଠା କରି ପଦାକୁ ଚାହିଁ ଦେଖିଲା ବର୍ଷା ହେଉଛି । ସେ ଫେରିଲା ବେଳେ ଶୁଣିଥିଲା ଯେ ସେମାନେ ତାକୁ ସେହିଠାରେ ପକାଇଦେଇ ଚାଲିଯିବାକୁ ସ୍ଥିର କରିଥିଲେ । ବର୍ତ୍ତମାନ ସେ ସେହି ଠାରେ–ସେଇ ବାଲି ଉପରେ ଏ ଅନ୍ଧାର ଘଡ଼ଘଡ଼ି ବର୍ଷାରେ ପଡ଼ିଥିବ । ତା'ର ଶିରିଷ ସୁକୋମଳ କମନୀୟ ତନୁରେ—ଆହା !

ଶୁଭେନ୍ଦ୍ର ଶିହରିଉଠିଲା ।

ତା'ର ମନେପଡିଗଲା, ସେ କ'ଣ ଏତେବେଳଯାଏ ବିଲୁଆକୁକୁରଙ୍କ ଦୃଷ୍ଟିର...କଣ ଗୋଟାଏ ଅଜଣା ମୋହର ଆକର୍ଷଣରେ ଶୁଭେନ୍ଦ୍ରର ମନ ଘାଣ୍ଟି ହୋଇଗଲା ।

– କି ଅଜ୍ଞାନ ଚଣ୍ଡାଳ ଲୋକଗୁଡାକ ! ତମେ ତାକୁ କାନ୍ଧରେ ବହିଆଣିଥିଲ । ସ୍ପର୍ଶମଣି ଲାଗି ଲୌହ ସୁବର୍ଣ୍ଣ ହେଲା ପରି ତା'ର ଦେହସ୍ପର୍ଶରେ ତମେ ପବିତ୍ର ହୋଇଯାଇଛ । ଏଡ଼େ କୃତଘ୍ନ ତମେ ! ତାକୁ ପକାଇଦେଇଗଲ ! ସୃଷ୍ଟିର ଶ୍ରେଷ୍ଠ ବସ୍ତୁ ଘୋର ହୀନତା ଭିତରେ–ବାଲିଶେଯରେ ପଡିରହିଲା, ତମେ ଅତି ତୁଚ୍ଛ ହୀନ

ପ୍ରାଣ ଘେନି ପଳାଇଗଲ ! ତମ ପ୍ରାଣର କି ମୂଲ୍ୟ ଅଛି ? ଆଉ ଯା'ର ପ୍ରାଣ ଥିଲେ, ହୁଏତ ପୃଥିବୀର ସାର୍ବଭୌମତ୍ୱ ଆସି ତା' ପାଦତଳେ ଲୋଟିପଡିଥାନ୍ତା, ତାକୁ ଏହିପରି ଫିଙ୍ଗିଦେଇଗଲ ?

ଶୁଭେନ୍ଦୁ ଏତେ ଉତ୍ତେଜିତ ହୋଇପଡିଥିଲା ଯେ ହଠାତ୍ ଚେୟାର୍ ଉପରୁ ଉଠିପଡି ଘର ଭିତରେ ଏପାଖସେପାଖ ଟହଲିବାକୁ ଲାଗିଲା । ଟହଲୁଟହଲୁ ତା'ର କିପରି ମନେହେଲା, ବୋଧହୁଏ ଯୁବତୀର ପ୍ରାଣବାୟୁ ଛାଡିଯାଇନଥିଲା । ହୁଏତ ବିଷ ହିଁ ସେ ଖାଇଥିଲା । ବିଷର କ୍ରିୟା ତାକୁ ଏପରି ଅବସ୍ଥାକୁ ଆଣିଥିଲା, ଯେଉଁଥିରେ କି ତା'ର ଜୀବନର ଲକ୍ଷଣଗୁଡିକ ବାହ୍ୟ ଶରୀରରେ ପ୍ରକାଶ ପାଇବାର ସମସ୍ତ କ୍ଷମତା ହରାଇଦେଇଥିଲା । ସେଥିପାଇଁ ବୋଧହୁଏ ଏତେ ଜୀବନ୍ତ, ଏତେ ସତେଜ ଦିଶୁଥିଲା ସେ ! ତା' ନ ହେଲେ ବିଶ୍ୱାସ କରିହେଉନାହିଁ ଯେ ଏପରି ସୁସ୍ଥ ସୁନ୍ଦର ଦେହ ଭିତରେ ଅନ୍ୟ କୌଣସି ଗୋପନ ରୋଗ ଥାଇ ତା'ର ଏପରି ଶୋଚନୀୟ ଅବସ୍ଥା ଘଟାଇଛି ବୋଲି । ବଡ଼ ଭୁଲ୍ କଲା ସେ ।

ବୃଥାରେ ସେହି ମୂର୍ଖ, ଆଜନ୍ମ କାଣ୍ଡଜ୍ଞାନଶୂନ୍ୟ ଲୋକମାନଙ୍କୁ କାହିଁକି ସେ ଦୋଷୀ କରୁଛି ! ସତେ ନିଜେ ସେମାନଙ୍କ ଅପେକ୍ଷା ବେଶୀ ଦୋଷୀ । ସେମାନେ ତ ସାଧାରଣ ମୂର୍ଖ ବାହକ; କିନ୍ତୁ ସେ ତ ଶିକ୍ଷିତ । ସେ ନିଜେ କଲା କ'ଣ ? ଯଦି ସେମାନଙ୍କୁ ଅଟକାଇ ବାଧ କରି ସେ ଡାକ୍ତରଙ୍କୁ ଡାକି ଦେଖାଇପାରିଥାନ୍ତା, ତା' ହେଲେ ସବୁ ସନ୍ଦେହ ଦୂରହୋଇଯାଇଥାନ୍ତା । ସେହି ମୂର୍ଖଗୁଡାକଙ୍କ କଥାରେ ସେ ବା ଭାସିଗଲା କିପରି ? ସେ ତା'ର ହାତଟିକୁ ମଧ ଧରିଥିଲା । ପୂର୍ଣ୍ଣ ଦୋଷୀ ସେ ନିଜେ ! ଆଜି ବିବାହ ଲଗ୍ନରେ, କିଏ ତା'ର ହାତ ଧରି, ଧର୍ମସାକ୍ଷୀ କରି ତାକୁ ତା'ର କୁଳବଧୂ ରୂପେ ବରଣ କରି ନେଇଥାନ୍ତା; କିନ୍ତୁ ବାଟରେ ସେ ତା'ର ହାତ ଧରିଛି, ସେ ମୃତ ହେଉ ବା ଜୀବିତ ହେଉ, ଧର୍ମତଃ ସେ ତା'ର ।

ଶୁଭେନ୍ଦୁ ମନେମନେ ଚମକିପଡିଲା । କି ଅସଂଲଗ୍ନ କଥା ! ଛି ଛି, କ'ଣ ସେ ଭାବୁଛି ! ସେ ଜଣେ ସାମାନ୍ୟ ଯୁବତୀ, ରୂପସୀ ମାତ୍ର । ପୁଣି ମୃତ । ସେ ଜୀବିତ ଆଉ ଜ୍ଞାନୀ ଯୁବକ । ଜଣେ ମୃତା ତରୁଣୀ ସମ୍ବନ୍ଧରେ ତା'ର ଏପରି ଭାବିବା ଘୋର ଅନ୍ୟାୟ । ଛି, ଏହି କଦର୍ଯ୍ୟ ଭାବନା ତା' ମନକୁ କିପରି ଆସିଲା !

ଏପରି ଭାବିବା ତା'ର ଦୋଷ ନୁହେଁ, ଏ ଶୁଭେନ୍ଦୁର ବୟସର ଗୁଣ । ଯେଉଁ ବୟସରେ ଯୁବକ ଯୌବନଆବେଶରେ ଅଭିଭୂତ ହୋଇ ତା' ନବଜାଗ୍ରତ ଚେତନାର

ଚତୁର୍ଦ୍ଦିଗରେ ସୃଷ୍ଟି କରେ–ସୁଖ ସୌଭାଗ୍ୟର ଇନ୍ଦ୍ରଜାଲ ଯେତେବେଳେ ଚନ୍ଦ୍ରର ଜ୍ୟୋତ୍ସ୍ନା ପରି କଳ୍ପନା ତାହାର ଝଲମଲ ହୋଇଉଠେ, ସେତେବେଳେ ସ୍ୱାଭାବିକ ମନର ଭାବ ଏହିପରି ହିଁ ହୋଇଥାଏ । ଶୁଭେନ୍ଦ୍ର କିନ୍ତୁ ସେହି କଳ୍ପନାକୁ ବିବେକ ଦ୍ୱାରା, ସେହି ଚେତନାକୁ ଅନୁଶୀଳନ ଦ୍ୱାରା ମଙ୍ଗଳକର କରିନିଏ । କାର୍ଯ୍ୟରେ ଲାଗିଲା ଭଳି କରିନିଏ ।

ଧୀରେଧୀରେ ଯାଇ ସେ ଚେୟାର ଉପରେ ବସିପଡି, ବାମ ହସ୍ତରେ କପାଳର ଘର୍ମବିନ୍ଦୁ ମୋଚନ କରି ପୁଣି ଗୋଟିଏ ସିଗାରେଟ୍ ଧରୁଧରୁ ଭାବିଲା, ବର୍ତ୍ତମାନ ଯଦି ସେ ଡାକ୍ତରକୁ ଡାକି ଦେଖାଇପାରନ୍ତା ତ କ୍ଷତି କ'ଣ ? ତେବେ ରୋଗୀ ଯେବେ ପ୍ରକୃତ ମୃତ ହୋଇଥିବ ତ ତା' ହେଲେ–ଆହା ! ସେ ନଈବାଲିରେ ପଡିଥିବ । କେଡ଼େ ହୀନ ଭାବରେ ବିଲୁଆକୁକୁର ଆସି ଘେରିଥିବେ, ତାକୁ ଖଣ୍ଡଖଣ୍ଡ କରି... ଇସ୍, କି ଶୋଚନୀୟ କଥା ! କି ହୃଦୟବିଦାରକ ଦୃଶ୍ୟ ! ସେ ଆଉ ଭାବିପାରିଲା ନାହିଁ । ଦିଆସିଲି ଜାଳି ସିଗାରେଟ୍ ଲଗାଇଲା ।

## ତିନି

କିଛି ସମୟ ବିସ୍ମିତ ଭାବରେ ବସିରହି କ'ଣ ଭାବି ଚାକରକୁ ଡାକିଲା– "ବାଞ୍ଛା" ।

ଦୂରରୁ 'ଆଜ୍ଞା' କହି ବାଞ୍ଛା ଆସି ପାଖରେ ଛିଡାହେଲା ।

ଶୁଭେନ୍ଦ୍ର ପଚାରିଲା–

"ବର୍ଷା ହେଉଛି ନା ଛାଡ଼ିଲାଣି ।"

ବାଞ୍ଛା ପଦାକୁ ଯାଇ ଫେରିଆସି କହିଲା–

"ଖୁବ୍ ବଡ଼େ ନୁହେଁ, ଅଳ୍ପ–ଏହିକ୍ଷଣି ଛାଡ଼ିଯିବ ଯେ । ମେଘ ଆଉ ନାହିଁ । ଜହ୍ନ ପଡିଆସୁଛି ।"

ଗୋଟିଏ ଗଭୀର ନିଶ୍ୱାସ ପକାଇ ଶୁଭେନ୍ଦ୍ର ନିଜକୁ ସମ୍ଭାଳିନେଲା ଭଲ ଭାବରେ । ଟେବୁଲ ଉପରୁ ଗୋଟିଏ ଛୋଟ ବାକ୍ସ ଆଣି ବାଞ୍ଛା ହାତକୁ ଦେଇ କହିଲା–

"ହାତରେ ଗୋଟିଏ ଠେଙ୍ଗା ଧର୍ ।"

ନିଜେ ଗୋଟିଏ ଛୋଟ ପୁଡିଆ ଆଉ ବଡ଼ ଟର୍ଚ୍ଚଲାଇଟ୍‌ଟି ଧରି ପଦାକୁ ବାହାରିପଡିଲା ।

ବାଅ୍ଥା କିଛି ବୁଝିପାରିଲା ନାହିଁ । ବାକ୍‌ସଟି ଦେଖାଇ କହିଲା– "ବାବୁ ଇଏ ରାତିରେ କଅଣ ହେବ ?"

କିଛି ନ ଶୁଣି ଶୁଭେନ୍ଦ୍ର ନଇ ଆଡକୁ ଅଗ୍ରସର ହେଲା । ବାଅ୍ଥା ଠେଙ୍ଗାଟା କାନ୍ଧରେ ପକାଇ ବାକସ୍‌ଟି ଧରି ଚାଲିଲା ପଛେପଛେ ।

ଆକାଶ ନିର୍ମଳ ହୋଇଯାଇଛି । ଚନ୍ଦ୍ରକିରଣରେ ରାତ୍ରି ଗାଧୋଇ ସାରି ସଫା ଲୁଗା ପିନ୍ଧିଲା ପରି ଦିଶୁଛି ।

ଶୁଭେନ୍ଦ୍ର ଯେଉଁଠି ବସିଥିଲା, ସେଠାରେ ପହଞ୍ଚି ଈପ୍‌ସିତ ଦିଗକୁ ଚାହିଁଲା, କିଛି ଦେଖିପାରିଲା ନାହିଁ ।

ବାଅ୍ଥା ପଚାରିଲା– "ବାବୁ, କ'ଣ ଖୋଜୁଛ ?"

ଶୁଭେନ୍ଦ୍ର କିଛି ନ କହି ଅଗ୍ରସର ହେଲା । ପାଖ ଦେଇ ଦୁଇଟା ବିଲୁଆ କାମୁଡା କାମୁଡି ହୋଇ ଦୌଡ଼ି ଚାଲିଗଲେ । ଶୁଭେନ୍ଦ୍ରର ଛାତି ଭିତର ଦାଉଁକିନା ହେଲା । ବାଅ୍ଥା 'ହାସ୍ ହାସ୍' କରି ପାଟି କରିଉଠିଲା ।

ଶୁଭେନ୍ଦ୍ର ମନେ ମନେ ଭାବିଲା–

"ଆଉ କାହିଁକି–ସବୁ ବୃଥା, ଖୁବ୍ ବିଳମ୍ବ ହୋଇଗଲା । ସେମାନଙ୍କୁ ସେ ପ୍ରାୟ ଘଣ୍ଟାଏ ହେବ ଛାଡିଗଲାଣି । ଶୃଗାଳକୁକୁରଙ୍କ ଦ୍ୱାରା ରୂପର ପ୍ରତିମା ଦେହରୁ ମାଟି ସବୁ ଧୋଇହୋଇଯିବଣି, ଖାଲି ଛାଞ୍ଚଟା ପଡିଥିବ ମାତ୍ର । ଏ ଦୃଶ୍ୟ ତ ସେ ଦେଖିପାରିବ ନାହିଁ ।"

ନିରାଶାରେ ଦେହସାରା ତା'ର ଝିମିଝିମି ହୋଇଗଲା । ଅତି ଦୁଃଖରେ ତା' ପାଟିରୁ ବାହାରିପଡିଲା, 'ହାୟ' । ଫଟୋ ଖଣ୍ଡେ ହେଲେ ସେ ରୂପରେ ରଖିପାରିଥାନ୍ତି ।

ବାବୁଙ୍କର ଏ ଅବସ୍ଥା ଦେଖି ବାଅ୍ଥା କେବଳ ଏତିକି ବୁଝିଲା ଯେ ସେ କ'ଣ ଖୋଜୁଛନ୍ତି । ତା'ର କିଛି ପଚାରିବାକୁ ସାହସ ହେଲା ନାହିଁ । ଏତିକିବେଳେ କ'ଣ ଶବ୍ଦ ଶୁଣିପାରି ବାଅ୍ଥା ସାହସ ଧରି ପଚାରିଲା–

"ବାବୁ କଣ ଗଁ ଗଁ ଶୁଭିଲା !"

ଶୁଭେନ୍ଦ୍ର ଅନ୍ୟମନସ୍କ ଥିଲା । ସେ ଭାବିଲା, ବାଅ୍ଥା ଭୟରେ ଏପରି କହୁଛି ବୋଲି; କିନ୍ତୁ ସେ ମନେମନେ ଭାବୁଥାଏ, ସେମାନେ ପକାଇଦେଇ ଯିବାକୁ କହୁଥିଲେ–ଯଦି ପକାଇ ଦେଇଯାଇଥିବେ । ତାର ସନ୍ଦେହ ହେଲା–କାହିଁ, ବିଲୁଆକୁକୁରଙ୍କର ତ କିଛି ଶବ୍ଦ ନାହିଁ । ସେମାନେ ଶବକୁ ନିଶ୍ଚୟ ଘେନିଯାଇଛନ୍ତି !

ଭାବି ଭାବି ଚତୁର୍ଦ୍ଦିଗକୁ ଆଖି ପକାଇ ସେ ଅଗ୍ରସର ହେଉଥାଏ ।

ଏହି ସମୟରେ ବାଞ୍ଛା ପଛରୁ କହି ଉଠିଲା–

"ବାବୁ ସେଆଡ଼େ ଯାଅନା । ସେପାରିରେ ଝାଡାବାନ୍ତି ଲାଗିଛି । କିଏ ଗୋଟାଏ ମୁର୍ଦ୍ଦାର ପକାଇଦେଇ ଯାଇଚି ।"

ଘର୍ମାକ୍ତ ଦେହରେ ଥଣ୍ଡା ପବନ ବାଜିଲାପରି, ଶୁଭେନ୍ଦୁର କାନରେ କଥା ପଦକ ବାଜିଲା । ସେ ଉତ୍କଣ୍ଠିତ ହୋଇ ପଚାରିଲା–

"କାହିଁ ?"

ବାଞ୍ଛା ହସ୍ତ ସଙ୍କେତରେ ଜଣାଇ ଦେବାକୁ ଉଦ୍ୟତ ହେଉହେଉ ଶୁଭେନ୍ଦୁ ଦେଖିପାରି ହଠାତ୍ ଟର୍ଚ୍ଚ ଟିପିଦେଲା । ଚିହ୍ନିପାରିଲା ନାହିଁ । କାରଣ ଶବଟି ତା' ଆଡକୁ ପିଠି କରି ପଡିଥିଲା । କେବଳ ବେକତଳେ ବୁଢୁଳାଏ ଲୁଗା ମୋଡ଼ି ହୋଇ ପଡିଥିବାରୁ ମୁହଁଟି ଅର୍ଦ୍ଧେକ ଉପରକୁ ବୁଲିପଡିଥିଲା । ଯୁବତୀ ନାଲିରଙ୍ଗର ଗୋଟିଏ ଶାଢ଼ି ପିନ୍ଧିଥିଲା ବୋଲି ଶୁଭେନ୍ଦୁର ମନେପଡିଲେ ହେଁ ସେ ସଂଦିଗ୍ଧ ମନରେ ଶବ ନିକଟକୁ ଗତିକଲା ।

ବାଞ୍ଛା ଅତି ବିନୟର ସହିତ କହିଲା –

"ବାବୁ, ସାତୁକୁ ଯା'ନା । ମୁର୍ଦ୍ଦାରଟା ପଡିଛି ପରା ।"

ଶୁଭେନ୍ଦୁ ଶବ ପାଖରେ ପହଞ୍ଚି, ଶବର ଆପାଦମସ୍ତକ ଟର୍ଚ୍ଚ ଆଲୋକ ବିଚ୍ଛୁରିତ କରିଦେଲା । ବର୍ଷା ପବନରେ ବାଲି ଉଡ଼ି ଶବ ଦେହର ସ୍ଥାନେ ସ୍ଥାନେ ଲାଗିଥିଲେ ହେଁ ଜଣାଗଲା, ଯେପରି ଫୁଲମାଳଟି ଗୁନ୍ଥିସାରି, ମାଳାକାର କାର୍ଯ୍ୟାନ୍ତରେ ଉଠିଯିବାର ଅବକାଶ ଭିତରେ – କିଏ ଯେପରି ଗୃହ ପରିଷ୍କାର କରି ଭ୍ରମବଶତଃ ତାକୁ ଘରକୋଣକୁ ଝାଟେଇ ଦେଇଛି ।

ଶୁଭେନ୍ଦୁ ଭାବିଲା, ଏ ଅନୁପମେୟ ରୂପରାଶି କିପରି ବାଲିରେ ନିରାଶ୍ରିତା ହୋଇ ପଡିଛି ! ଆହା ମନୁଷ୍ୟ ଜୀବନର କି ପରିଣତି !

ଗୋଟିଏ ବ୍ୟାକୁଳ ନିଶ୍ୱାସ ତା'ର ବକ୍ଷପଞ୍ଜର ଭେଦ କରି ପଦାକୁ ବାହାରି ଆସିଲା । ଅନ୍ତର୍ ତା'ର କାନ୍ଦିଉଠିଲା । କ୍ଷଣକାଳ ସେ ଶବ ଆଡକୁ ଚାହିଁ ଭାବିଲା, ଏହା ଦେହରେ ଜୀବନ ଥିଲେ ସେ ଗୋଟିଏ ସ୍ଥାନରେ ସ୍ଥିର ହୋଇ ନ ଥାନ୍ତା, ଅନ୍ତତଃ ଦେହସଂଯୁକ୍ତ ବାଲି ଉପରେ ଅଙ୍ଗସଂଚାଳନର ଦାଗ ପଡିଥାନ୍ତା । ଭାବନାରେ ଶୁଭେନ୍ଦୁ କାଳକ୍ଷେପ ନ କରି ବାଞ୍ଛା ହାତରୁ କ୍ୟାମେରା ନେଇ ଫିଟ୍ କରିଦେଲା । ଆଣିଥିବା

ଫସ୍‌ଫରସ୍ ପୁଡ଼ିଆଟି ପକେଟରୁ ବାହାର କରି ଆଲୁଅ ଜାଳି କ୍ୟାମେରାର ବଟମ୍ ଟିପିଦେଲାବେଳେ କଣ ଗଁ ଗଁ ଶବ୍ଦ ଶୁଭିଲା । ଉଭୟେ ଉଭୟଙ୍କ ମୁହଁକୁ ଚାହିଁ ରହିଲେ ।

ପରକ୍ଷଣରେ ଦେଖିଲେ, ଶବର ମୁହଁ ତଳଆଡକୁ ବୁଲିପଡିଛି ଏବଂ ଆଗକୁ ସିଧା ଭାବରେ ପଡିଥିବା ବାମ ହାତଟି ତା'ର ସଂକୁଚିତ ହୋଇଯାଇଛି ।

ବାଞ୍ଛା ଭୟରେ ଚିତ୍କାର କରି ଉଠି କହିଲା–

ବାବୁ ମଣିଷଟା ଜିଇଛି । ହଇଜା ମଲୁଟାକୁ ପକାଇଦେଇଯାଇଛନ୍ତି, ମରିନାହିଁ ।

ଧନାକାଂକ୍ଷୀ ଦରିଦ୍ର ଧନର କଳ୍ପନା କଲାବେଳେ ହଠାତ୍ ଆଶାତୀତ ଧନ ଲାଭ କରି ଯେପରି ବିସ୍ମୟ ଆନନ୍ଦରେ ଅଭିଭୂତ ହୋଇପଡ଼େ, ଶୁଭେନ୍ଦ୍ର ଠିକ୍ ସେହିପରି ବିସ୍ମୟ-ପୁଲକରେ ଅଧୀର ହୋଇପଡ଼ିଲା । ସେ ବିଷ ଖାଇ ମରିଛି ବୋଲି ତା'ର ଯେଉଁ ସନ୍ଦେହ ହେଉଥିଲା, ତାହା ଦୂରହୋଇଗଲା । ତା'ର ଜୀବନର ପ୍ରମାଣ ପାଇ ସେ ତତ୍କ୍ଷଣାତ୍ ଯାଇ ବସିପଡ଼ି ବାଲୁକାଲୁଣ୍ଠିତ ମସ୍ତକଟି ତା'ର ନିଜର ଜଙ୍ଘ ଉପରକୁ ଉଠାଇଆଣି ବାଲି ଝାଡ଼ି ପରିଷ୍କାର କରିଦେଲା । ନାକରେ ହାତ ଦେଇ ନିଃସନ୍ଦେହରେ ବୁଝିପାରିଲା ଯେ ଯୁବତୀ ବଞ୍ଚିଛି । ଶୁଭେନ୍ଦ୍ର ବ୍ୟଗ୍ରତାର ସହିତ ଅନାବୃତ ଶରୀରାଂଶକୁ ତା'ର ପିନ୍ଧିଥିବା ଶାଢ଼ି ଦ୍ୱାରା ଆଚ୍ଛାଦନ କରିଦେଇ ପୂର୍ଣ୍ଣ ଉତ୍ସାହର ଆବେଗରେ ବାଞ୍ଛାକୁ ଚାହିଁଲା ।

ବାଞ୍ଛା ମୁନିବର କ୍ରିୟାକଳାପ ଲକ୍ଷ୍ୟ କରି ମନେମନେ ବିରକ୍ତ ଓ ଆତଙ୍କିତ ହୋଇଉଠୁଥିଲେ ମଧ୍ୟ କିଛି କହିବାର ସାହସ ତା'ର ନଥିଲା । ସେ କେବଳ ଶୁଭେନ୍ଦ୍ରର ଚାହାଣିର ଅର୍ଥ ବୁଝିପାରି ଅତି କୁଣ୍ଠିତ ଭାବରେ ପାଖକୁ ଆସିଲା । କିଛି ନ କହି ଟିକିଏ ତଫାତରେ ଛିଡାହୋଇ ରହିଲା । ବାଞ୍ଛାର ମନୋଭାବ ବୁଝିପାରି ଏ ଅବସ୍ଥାରେ ମଧ୍ୟ ଶୁଭେନ୍ଦ୍ରକୁ ହସ ଲାଗିଲା । ସେ କିଛି ନ କହି ମୁହୂର୍ତ୍ତେ ମନେମନେ କ'ଣ ଭାବି ଉଠି ଲୁଗାଟାକୁ ଅଣ୍ଟାରେ ଭିଡିଦେଲା ।

ବାଞ୍ଛା କେବଳ ବଲବଲ କରି ଶୁଭେନ୍ଦ୍ରକୁ ଚାହିଁ ଭୟରେ ଭାବିଲା–

"ବାବୁ କ'ଣ ପାଗଳ ହୋଇଗଲେ କି ?"

ଶୁଭେନ୍ଦ୍ର ଅବଲୀଳାକ୍ରମେ ଯୁବତୀକୁ କାନ୍ଧରେ ପକାଇ, ଶିବ ଦକ୍ଷଜେମା ସତୀଙ୍କୁ କାନ୍ଧରେ ବହିଆଣିଲା ପରି ଗୃହାଭିମୁଖରେ ପାଦ ପକାଇଲାକ୍ଷଣି, ବାଞ୍ଛା ବାଟ ଓଗାଳି ଅତି ବିକଳ ଭାବରେ ହାତଯୋଡି କହିଲା–

"ବାବୁ, ଏକଥା କାହିଁକି କରୁଛ, ଗୋଡ଼ତଳେ ପଡୁଛି । ବାବୁ, ସେଇଟାକୁ ପକେଇ ଦିଅ ।"

ଶୁଭେନ୍ଦ୍ର ଧମକ୍ ଦେଇ କହିଲା –

"ଆ, ଶୀଘ୍ର ଜିନିଷପତ୍ର ଧରି ।"

ଗୃହରେ ପ୍ରବେଶ କରି, ଶୁଭେନ୍ଦ୍ର ତତ୍କ୍ଷଣାତ୍ ବାଞ୍ଛାକୁ ଦୋକାନରୁ ଖଣ୍ଡେ ଶାଢ଼ି ଆଣିବାକୁ ଏବଂ ସେଠାରେ କାର୍ଯ୍ୟ କରୁଥିବା ସ୍ତ୍ରୀଲୋକଟିକୁ ଘରୁ ଡାକି ଦେବାକୁ ପଠାଇଦେଲା ।

ଡାକ୍ତରଖାନା କିଞ୍ଚିତ୍ ଦୂର ଥିବାରୁ ଡ୍ରାଇଭରକୁ ମଟର ନେଇ ଜଣେ ନର୍ସଙ୍କ ସହିତ ଡାକ୍ତରଙ୍କୁ ଡାକି ଆଣିବାକୁ ଆଦେଶ ଦେଲା ଏବଂ 'ପୟଜନ କେଶ୍' ବୋଲି ମଧ କହି ପଠାଇଲା ।

ଶୁଭେନ୍ଦ୍ର ଯୁବତୀଟିକୁ ସେହିପରି ଧରି, ତଳେ ଶୋଇଦେବ କି ନାହିଁ ଭାବି ଇତସ୍ତତଃ କଲାବେଳେ ଡାକିପଠାଇଥିବା ସ୍ତ୍ରୀଲୋକଟି ଗୃହଭିତରେ ପ୍ରବେଶ କରି, ବିସ୍ମୟାଭିଭୂତ ଭାବରେ ଶୁଭେନ୍ଦ୍ରକୁ ଚାହିଁ ଛିଡାହୋଇରହିଲା । କେତେ ଅବ୍ୟକ୍ତ ପ୍ରଶ୍ନ ଖେଳିଗଲା ଚାହାଁଣିରେ ତା'ର ।

ଶୁଭେନ୍ଦ୍ର ବୁଝିପାରି ଈଷତ୍ ଉଷ୍ମ କଣ୍ଠରେ କହିଲା–

"ଚାହୁଁଛୁ କ'ଣ, ଶୀଘ୍ର ଯା, କୁଣ୍ଡରେ ପାଣି ଭର୍ତ୍ତିକର୍ ।"

ଯୁବତୀକୁ ଭଲ ଭାବରେ ପରିଷ୍କାର କରିଦେଇସାରିଲା ବେଳକୁ ବାଞ୍ଛା ଲୁଗାଘେନି ପହଞ୍ଚିଗଲା । ଯତ୍ନର ସହିତ ଲୁଗା ପିନ୍ଧାଇଦେଇ ଶୁଭେନ୍ଦ୍ର ଆଉ ସେ ସ୍ତ୍ରୀଲୋକ ଉଭୟେ ମିଳି, ତରୁଣୀକୁ ଶୁଭେନ୍ଦ୍ରର ସୁଶୁଭ୍ର କୋମଳଶଯ୍ୟା ଉପରେ ଶୁଆଇଦେଲେ ।

ଘଟଣାଟି ଜାଣିବାକୁ ସ୍ତ୍ରୀଲୋକଟି ବଡ଼ ଚଞ୍ଚଳ ହୋଇଉଠିଥିଲା ମନେମନେ, ସସଙ୍କୋଚରେ ପଚାରିଲା–

"ବାବୁ, ଏ ଦୁର୍ଗାପ୍ରତିମାକୁ କାହୁଁ ପାଇଲ ?"

ଶୁଭେନ୍ଦ୍ର କିଛି ନ ଭାବି କହିପକାଇଲା–

"ନଈବାଲିରୁ ।"

ସ୍ତ୍ରୀଲୋକଟି ଆଶ୍ଚର୍ଯ୍ୟ ହୋଇ ପୁଣି ଚାହିଁଲା ।

ଶୁଭେନ୍ଦ୍ର ଅନ୍ୟ କିଛି କହିବା ପୂର୍ବରୁ ମଚମଚ ଶବ୍ଦରେ ଡାକ୍ତର ଗୃହ ମଧ୍ୟରେ, ହସହସ ମୁହଁରେ, 'ହଲୋ ପ୍ରିନ୍ସ୍'! କହି କହି ପ୍ରବେଶ କଲେ ।

ଇଂରାଜୀ କାଇଦା ଅନୁଯାୟୀ ଶୁଭେନ୍ଦ୍ରର କରମର୍ଦ୍ଦନପୂର୍ବକ କଣ୍ଠରେ ଈଷତ୍ ଗାମ୍ଭୀର୍ଯ୍ୟ ଫୁଟାଇ ପଚାରିଲେ—

"ହ୍ୱାଟ୍‌ସ ଦି ମ୍ୟାଟର ?"

ଶୁଭେନ୍ଦ୍ର ଅନ୍ୟ କଥାରେ ବୃଥା ସମୟ ନଷ୍ଟ ନ କରି କେବଳ ରୋଗୀକୁ ଦେଖିବାକୁ ଡାକ୍ତରଙ୍କୁ ଅନୁରୋଧ କଲା । ଡାକ୍ତର ମଧ ନିଜ କର୍ତ୍ତବ୍ୟରେ ମନୋନିବେଶ କଲେ ।

ରୋଗ ନିର୍ଣ୍ଣୟ ପରେ ପ୍ରତିକାର କରିସାରି ଡାକ୍ତର ଯେତେବେଳେ ଫେରିଲେ, ସେତେବେଳକୁ ରାତି ତିନିଟା ବାଜିଯାଇଥିଲା ।

ଶୁଭେନ୍ଦ୍ର ଡାକ୍ତରଙ୍କର ଉପଦେଶ ଅନୁସାରେ ରୋଗୀ ପାଖରେ ବସି ତା'ର ଶୁଶ୍ରୂଷା କରିବାକୁ ଲାଗିଲା । ନର୍ସ ପାଖରେ ଥିଲେ ମଧ ସେ ରୋଗୀକୁ କ୍ଷଣେ ମାତ୍ର ତ୍ୟାଗ କରି ଗଲାନାହିଁ । କେତେବେଳେ ସେହି ସୁନ୍ଦର ନୟନଯୁଗଳ ଉନ୍ମୀଳିତ ହେବ, ଏହି ଆଶାରେ ସେ ଉଦ୍‌ବିଗ୍ନ ମନରେ ଚାହିଁରହିଲା ।

× × ×

ରାତି ପାହିଲା, ପୁଣି ରାତି ହେଲା ।

ସହରରୁ ସିଭିଲ୍ ସର୍ଜନ, ଲେଡି ଡାକ୍ତର ଆସିଲେ, କେତେ ପ୍ରକାର ଚିକିତ୍ସା କରାଗଲା । ସେମାନେ ପୂର୍ଣ୍ଣ ଆଶା ଦେଇଗଲେ, କିଛି ଭୟ ନାହିଁ, ଶୀଘ୍ର ଚେତନା ଫେରିଆସିବ ବୋଲି ।

କାହିଁ—ତଥାପି ତରୁଣୀର ସଂଜ୍ଞା ଫେରିଆସିଲା ନାହିଁ ! ଶୁଭେନ୍ଦ୍ରର ମନ ଚଞ୍ଚଳ ହୋଇଉଠିଲା । ତାହାର ଅନ୍ତର ତରୁଣୀର ନିଷ୍ପ୍ରଭ ବେଦନା-କାତର ମୁହଁକୁ ଚାହିଁ ସମବେଦନାରେ ପୂର୍ଣ୍ଣ ହୋଇଗଲା । ସେ ଆଶଙ୍କିତ ବ୍ୟଥାରେ ଛଟପଟ ହେବାକୁ ଲାଗିଲା । କେତେବେଳେ ତା'ର ମନେହେଲା, ଯଦି ତା'ର ନିଜର ପ୍ରାଣ ବିନିମୟରେ ସେ ସଂଜ୍ଞା ଫେରାଇଆଣିପାରନ୍ତା ! ପୁଣି କେତେବେଳେ ଭାବିଲା ମନର ଆକାଂକ୍ଷା ପୂର୍ଣ୍ଣକରି ଗଭୀର ଆଲିଙ୍ଗନରେ ଯୁବତୀର ସଂଜ୍ଞା ଫେରାଇ ଆଣିବ, କିମ୍ବା କେଳା ସର୍ପବିଷ ଶୋଷଣ କଲାପରି, ଚୁମ୍ବନଚୁମ୍ବନରେ ଯୁବତୀର ଅଧର ବାଟ ଦେଇ ତା' ଦେହରୁ ସମସ୍ତ ବିଷ ଶୋଷି ବାହାରକରିଦେବ; କିନ୍ତୁ ତଥାପି ସେ ବିପୁଳ ଧୈର୍ଯ୍ୟର ସହିତ ବସି ସେହି ଶୁଭ ମୁହୂର୍ତ୍ତଟିକୁ ଅପେକ୍ଷା କରିବାକୁ ଲାଗିଲା ।

## ଚାରି

ମାସକ ପରେ, ଶୁଭେନ୍ଦ୍ରର ଅକ୍ଳାନ୍ତ ଯତ୍ନ ଓ ଅଜସ୍ର ଅର୍ଥବ୍ୟୟରେ ତରୁଣୀଟି ତା' ସ୍ୱାସ୍ଥ୍ୟ ଫେରିପାଇଲା ।

ତଥାପି ଡାକ୍ତର କୌଣସି କାୟିକ ବା ମାନସିକ ପରିଶ୍ରମ କରିବାକୁ, ଅନିଦ୍ରା ରହିବାକୁ ବାରମ୍ବାର ମନା କରିଦେଇଛନ୍ତି ! ଏବଂ କହିଛନ୍ତି ଯେ ଅନେକଦିନଯାଏ ଦେହରୁ ବିଷର କ୍ରିୟା ଯାଏନାହିଁ । ଟିକିଏ କିଛି ବ୍ୟତିକ୍ରମ ଘଟିଲେ ମୂର୍ଚ୍ଛା ଯିବାର ସମ୍ଭାବନା ଅଛି । ବିଶେଷତଃ ଖୁବ୍ କମରେ ଛ' ମାସ ପର୍ଯ୍ୟନ୍ତ ଅତ୍ୟନ୍ତ ସାବଧାନ ହେବାକୁ ପଡ଼ିବ । ସେଥିପାଇଁ ସେ ମଝିରେମଝିରେ ଆସି ଦୈନିକ ସେବନୋପଯୋଗୀ ଔଷଧ ଦେଇ ରୋଗୀକୁ ଦେଖିଯାଆନ୍ତି ।

ଏହି ଏକମାସ ହେଲା ଶୁଭେନ୍ଦ୍ର ଆହାର ନିଦ୍ରା ପ୍ରାୟ ଛାଡ଼ିଦେଇଛି । କେତେବେଳେ କ'ଣ ଖାଏ, କେତେବେଳେ ଶୁଏ କିଛି ଠିକ୍ ନଥାଏ । ଯୁବତୀର ସଂଜ୍ଞା ଫେରାଇଆଣିବାକୁ ଶୁଭେନ୍ଦ୍ର ପୂର୍ଣ୍ଣ ତିନିଦିନ କାଳ ଗୋଟିଏ ସ୍ଥାନରେ ଏକାଗ୍ରଚିତ୍ତରେ ବସିରହିଥିଲା । ଏହା ଦେଖି ଡାକ୍ତର ତାକୁ କହିଥିଲେ –

"ଆପଣ କାହିଁକି ଆପଣଙ୍କର ବହୁମୂଲ୍ୟ ସ୍ୱାସ୍ଥ୍ୟ ନଷ୍ଟ କରୁଛନ୍ତି ?"

ଶୁଭେନ୍ଦ୍ର ହସିହସି ଉତ୍ତର ଦେଇଥିଲା –

"ବର୍ତ୍ତମାନ ମୋର ବୋଧଶକ୍ତି ମୋ' ଅଧୀନରେ ନାହିଁ । ମୁଁ କିଛି କଷ୍ଟ ଅନୁଭବ କରୁନାହିଁ । ଆପଣ ମୋ' କଷ୍ଟ କଥା କିଛି ନଭାବି ରୋଗୀର କଷ୍ଟ କିପରି ଶୀଘ୍ର ଉପଶମ ହେବ, ସେହିକଥା ଭାବନ୍ତୁ ।"

ଶୁଭେନ୍ଦ୍ର ସର୍ବଦା ନିଜକୁ କୌଣସି ନା କୌଣସି ଜ୍ଞାନଚର୍ଚ୍ଚାରେ ଲଗାଇଥାଏ । ମାତ୍ର ଏହି ଏକମାସ ହେବ କେବଳ ତରୁଣୀଟିର ସ୍ୱାସ୍ଥ୍ୟ ବିଷୟ ବ୍ୟତୀତ ଆଉ କିଛି ଭାବିନାହିଁ ।

ଦିନେ ନର୍ସ ଟେବୁଲ ତଳୁ କ'ଣ ଆଣିବାକୁ ଯାଇ ଦେଖିଲା, କାନ୍ଥ ପାଖକୁ କେତେଗୁଡ଼ିଏ ମୋଟା ସୁନ୍ଦର ସୁନ୍ଦର ବହି ଜମାହୋଇଛି । ଆଶ୍ଚର୍ଯ୍ୟ ହୋଇ ଶୁଭେନ୍ଦ୍ରକୁ ପଚାରିଲା –

"ଏଠି ଏତେଗୁଡ଼ିଏ ବହି ଜମାହୋଇଛି ଯେ ?"

ଆଲମାରିରେ କେତେ ଔଷଧଶିଶି ସଜାଡୁସଜାଡୁ ଶୁଭେନ୍ଦ୍ର ଅନାସକ୍ତ, ଉଦାସୀନ ଭାବରେ ଉତ୍ତର ଦେଲା –

"ହଁ ହଁ, ମୋର ରଖିବାକୁ ମନେନାହିଁ ।"

ଅଥଚ ଏହି ବହିଗୁଡ଼ିକ ହିଁ ଶୁଭେନ୍ଦ୍ରର ପ୍ରିୟତମ ବସ୍ତୁ ଥିଲା ।

ଦୁଇମାସ ହେଲା ଗୋଟିଏ ନର୍ସ ଆଉ ଦୁଇଜଣ ପରିଚାରିକା ରୋଗୀର ପଛେ ପଛେ ଅଛନ୍ତି । ତଥାପି କିଏ କେତେବେଳେ କ'ଣ ତ୍ରୁଟି କରିପାରେ, ସେଥିପାଇଁ ଶୁଭେନ୍ଦ୍ର ସବୁବେଳେ ସତର୍କ ରହିଛ । ଆଉ ରୋଗୀ ସଙ୍ଗରେ କୌଣସି କଥା ନ ହେବାକୁ ଶୁଭେନ୍ଦ୍ର ଭଲ ଭାବରେ ସମସ୍ତଙ୍କୁ ତାଗିଦ୍ କରିଦେଇଛି ଏବଂ ଏପରି ଭାବରେ ତା'ର ସୁବିଧା କରି ଦେଇଛି ଯେ ତାକୁ ଯେପରି ମୋଟେ କଥା କହିବାକୁ ନ ପଡ଼ିବ ।

ଏପରି ତିନୋଟି ମାସ କଟିଗଲା ।

ତରୁଣୀଟିର ଭାବନା ଶକ୍ତି ଫେରିଆସିଲା ବେଳୁ ସେ ମନେମନେ ଭାବୁଛି–

"ସେ ଯାହା ଶୁଣିଥିଲା ଏ ତ ତା' ନୁହେଁ! ସେ ତ ଏତେ ବଡ଼ଲୋକ ବୋଲି କହୁ ନଥିଲେ; କ'ଣ ରେଲବାଇରେ କାମ କରେ, ପନ୍ଦର ଟଙ୍କା ମାସକୁ ପାଏ । ଜମି ପାଞ୍ଚମାଣ ଅଛି; କିନ୍ତୁ ଯାଙ୍କର ତ ଟଙ୍କାର ସୀମା ନାଇଁ! କାହିଁ, ସେ ତ ଚାକିରି କରିବାକୁ ଯାଉନାହାନ୍ତି! ଛୁଟି ଆଣିଥିବେ । ଘର ତିନି ବଖରା ବୋଲି କହୁଥିଲେ; କିନ୍ତୁ ଏ ତ ରାଜାର ନଅର! ବେଶୀ କଥା, ସେ ଯାହାର ହେବାକୁ ଯାଉଥିଲା, ସେ ଆଦୌ ସୁନ୍ଦର ନୁହେଁ ବୋଲି ତା'ର ସଙ୍ଗୀମାନେ ତାକୁ କହୁଥିଲେ । ଆଉ ଇଏତ ଏଡ଼େ ସୁନ୍ଦର । ସାକ୍ଷାତ କାର୍ତ୍ତିକ ! ପୁଣି ତାର ବୟସ ପଚିଶ ବର୍ଷ, ଏ ତ ଗଭା ଟୋକା, ତେଇଶି କି ଚବିଶ ବର୍ଷ । କଥା କଣ !"

ତା' ମନ ଦୋଦୁଲ୍ୟମାନ ଅବସ୍ଥାରେ ଥାଇ ଏପାଖସେପାଖ ହୁଏ ।

ପୁଣି ବେଳେବେଳେ ଭାବେ–

"ସେ ଏଠାକୁ ବା ଆସିଲା କିପରି ! ସବାରି ବେହେରା ତ ଆଣି ତାକୁ ଠିକ୍ ସ୍ଥାନରେ ଛାଡ଼ିଥିବେ ! ନା ଅନ୍ୟ ସ୍ଥାନରେ ଛାଡ଼ିଦେଇଗଲେ! ଏହା କିପରି ହେବ ! ସଙ୍ଗରେ ତ ତା' ଭାଇ ଥିଲା ! ସେ ତ ଘର ଦେଖିବାକୁ ତା' ବାବା ସଙ୍ଗରେ ଆସିଥିଲା । ତା'ର କ'ଣ ଆଉ ଭୁଲ୍ ହେବ ! ସେ ତ ପିଲାଟିଏ ନୁହେଁ ଯେ ତାକୁ ଆଣି କେଉଁଠି ଛାଡ଼ିଦେଇଯିବ । କେଜାଣି, ସେ ତ ସ୍ୱାବତମାଆର ପୁଅ । ସନ୍ଦେହର ଗଭୀର ନିଶ୍ୱାସ ସେ ପବନରେ ମିଶାଇଦିଏ । ପୁଣି ଭାବେ, କେଳା ବେହେରା ତ ସାଙ୍ଗରେ ଥିଲା, ସେ ତାକୁ ପିଲାଦିନୁ ଦାଦା ଦାଦା ବୋଲି ଡାକେ। ଆଉ କେଳା ମଧ ତାକୁ ଖୁବ୍ ସ୍ନେହ କରେ । ସେ ତ କେଉଁ କିଛି ଭୁଲ କରିବ ନାହିଁ ! ତେବେ ତାକୁ ଏପରି ମିଛକଥା ଶୁଣାଇଲେ କାହିଁକି ?"

ପୁଣି ତା'ର ମନେହୁଏ–

"ବୋଧହୁଏ ତା' ବାପା ତା' ମା'କୁ ଲୁଚେଇ ଏକଥା କରିଛି । କାଳେ ଖୁବ୍ ବଡଲୋକ ଘରେ ଝିଅକୁ ଦେଉଛି ଜାଣିଲେ, ତା' ସାବତମା କିଛି ଗୋଳମାଳ କରିବ ବୋଲି । ଏହି କଥାହିଁ ସେ ମନେମନେ ଠିକ୍ କରିନେଲା ଯେ ଏହିଠାକୁହିଁ ସେ ଆସିଥିଲା; କିନ୍ତୁ ସେ ଶୁଣିଥିଲା ଭୁଲ ।"

ତା'ର ମନେପଡ଼ିଲା–

"ସେ କାନ୍ଦୁକାନ୍ଦୁ ତା' ବାବାଠାରୁ ବିଦାୟ ଘେନି ଆସିଲା ବେଳେ ତା ବାବା ତାକୁ ଏତିକି କହିଥିଲା ଯେ ସେ ତାକୁ ଖୁବ୍ ଭଲ ଘର ଦେଖି ଦେଇଛି ।" ତଥାପି ସେ ତାର ମନର ସନ୍ଦେହ କୌଣସିମତେ ଦୂରକରିପାରେ ନାହିଁ ।

ଦିନେ ଟେବୁଲ୍ ଦୁଇ ପାର୍ଶ୍ୱରେ ଶୁଭେନ୍ଦ୍ର ଆଉ ନର୍ସ ପରସ୍ପର ସମ୍ମୁଖୀନ ହୋଇ ବସିଥିଲେ । ଗୋଟିଏ ସୋଫାରେ ଯୁବତୀଟି ବସିଥିଲା ନର୍ସ ପାଖରେ– ଅଳ୍ପ ବ୍ୟବଧାନରେ ଏ ଉଭୟଙ୍କୁ ପ୍ରାୟ ପଶ୍ଚାତ୍ କରି, ତା'ର ଶାଢ଼ି-ଦୁର୍ଗର-ପ୍ରାଚୀର ଓଢଣାଟିକୁ ବାମହସ୍ତରେ ନାସିକାର ନିମ୍ନରେ ଚିପି ଧରି ।

ନର୍ସ ତା' ବେତନ ନେଇସାରି ଶୁଭେନ୍ଦ୍ରକୁ କହିଲା–

"ମତେ କ'ଣ ଆଉ ଆସିବାକୁ ହେବ ?"

ଶୁଭେନ୍ଦ୍ର ତରୁଣୀର ଉଦ୍ଦେଶ୍ୟରେ ନର୍ସକୁ କହିଲା–

"ଆପଣଙ୍କ ରୋଗୀକୁ ଦେଖନ୍ତୁ, ତାଙ୍କର ଆଉ ଦରକାର ହେବ କି ନାହିଁ, ଆପଣ ଠିକ୍ କରନ୍ତୁ– ମୁଁ କ'ଣ କହିବି ?"

ଯୁବତୀ ଅନ୍ୟଦିଗକୁ ମୁହଁ ଫେରାଇ ବସିଥିଲା । ନର୍ସ ତାକୁ ଚାହିଁଲା ।

କିନ୍ତୁ କଣ ବୋଲି ଡାକିବ କିଛି ଭାବିପାରିଲା ନାହିଁ । ନର୍ସ ପୂର୍ବପରିଚିତ ସେ ଶୁଭେନ୍ଦ୍ର ପ୍ରତି ସହାସ ଜିଜ୍ଞାସୁ ଦୃଷ୍ଟି ପକାଇ ଅତି ଅନ୍ତରଙ୍ଗତାର ସହିତ ପଚାରିଲା–

"ତାଙ୍କ ନାମ କଣ ?"

ଆଜିଯାଏ ଯୁବତୀକୁ କୌଣସି କଥା କହିବାର ଦରକାର ପଡ଼ିନାହିଁ ବୋଲି ସେ କିଛି କଥା କହି ନାହିଁ ଏବଂ ସେ ରୋଗୀ ନାମରେ ନାମିତ ହୋଇଥିବା ହେତୁ ତା'ର ବ୍ୟକ୍ତିଗତ ନାମ ଜାଣିବାର ଆବଶ୍ୟକତା ମଧ୍ୟ ଘଟି ନାହିଁ । ସେଥିପାଇଁ କେହି ତାର ନାମ ଜାଣନ୍ତି ନାହିଁ । ଆଉ ତା'ର ଆରୋଗ୍ୟଲାଭ ପରେ ମଧ୍ୟ ସେ କାହାରି ସହିତ ବାକ୍ୟବିନିମୟ ନ କରୁଥିବାରୁ, ଶୁଭେନ୍ଦ୍ରର ବେଳେବେଳେ ସନ୍ଦେହ ହୋଇଛି,

ବୋଧହୁଏ ବିଷର କ୍ରିୟା ତାକୁ ବୋବା କରି ଦେଇଛି । ତଥାପି ତାର ଉତ୍କଟ ଲଜ୍ଜାଶୀଳତା ପାଇଁ ଶୁଭେନ୍ଦ୍ର ତା' ସହିତ କୌଣସି ବାକ୍ୟାଳାପର ସୁବିଧା ଏପର୍ଯ୍ୟନ୍ତ କରିପାରି ନାହିଁ । ସେଥିପାଇଁ ସେ ମଧ୍ୟ ତା'ର ନାମ ଜାଣି ନାହିଁ ।

ଏପରି ଗୋଟିଏ ପ୍ରଶ୍ନ ଉଠିପାରେ ବୋଲି ଶୁଭେନ୍ଦ୍ର ଭାବି ପାରି ନ ଥିଲା ।

ସେ ହଠାତ୍ ହତବୁଦ୍ଧି ହୋଇ ନର୍ସକୁ ଚାହିଁଲା । ସତ୍ୟ କଥା ପ୍ରକାଶ କଲେ କାଳେ ଯୁବତୀର କୌଣସି ମାନସିକ ବିକାର ଘଟିପାରେ, ଏଥିପାଇଁ ସେ ମନର ଭାବ ଗୋପନ ରଖି, ପରମୁହୂର୍ତ୍ତରେ ହସିହସି ସହଜ ଭାବରେ କହିଲା–

"ତାଙ୍କୁ ପଚାରନ୍ତୁ, ସେ ତ ବୋବା ନୁହଁନ୍ତି, କହିବେ ଯେ! ମୋ ପାଟିରୁ ନଶୁଣି ତାଙ୍କ ପାଟିରୁ ଶୁଣିବା ଭଲ । ମୋ' ପାଟିରେ ତାଙ୍କ ନାମ ଖୁବ କର୍କଶ ଶୁଭିବ ।"

ଏକଥା ଶୁଣି ତରୁଣୀ ମନେମନେ ଚମକିପଡ଼ିଲା, ଭାବିଲା–

" ଏ ମୋ' ନାଁ ଜାଣିଲେ କିପରି ? ଏ ନିଶ୍ଚୟ ସେଇ । ତା'ର ମନେପଡ଼ିଲା, କିଏ ଜଣେ ଅପରିଚିତ ଲୋକ ତାଙ୍କ ଘରେ ତା ଆଈଠାରୁ ତା' ନାଁ କ'ଣ ବୁଝୁଥିଲା ଦିନେ ।"

ଉତ୍ସାହର ସହିତ ଯୁବତୀର ଦେହରେ ହାତ ମାରି ନର୍ସ କହିଲା–

"ଶୁଭୁଛି ? ଏ ଆଡ଼କୁ ଟିକେ ଚାହଁ । ଏତେ ଲାଜ କଲେ କଣ ହେବ ?"

ନର୍ସର କଥାରେ ତରୁଣୀ ସଲଜ୍ଜ ଭାବରେ କିଞ୍ଚିତ୍ ବୁଲି ବସିଲା । ତା' କାନ୍ଧ ଉପରେ ହାତ ଥୋଇ ନର୍ସ ତାର କୋମଳତା ଅନୁଭବ କରୁକରୁ, ଟିକେ ହଲାଇ ଦେଇ ହାସ୍ୟସରସ କଣ୍ଠରେ ପଚାରିଲା–

"ତମ ନାମ କଣ ଗୋ ?"

ଯୁବତୀ ତା'ର ଅଲଙ୍ଘନୀୟ-ପ୍ରାଚୀର-ଓଢ଼ଣାଟିର ଅଭ୍ୟନ୍ତରରୁ କୌତୁକୋଜ୍ଜ୍ୱଳ ଆଖି ଦୁଇଟିର ଡୋଳା ସଞ୍ଚାଳନ କରି ଓ ତର୍ଜନୀ କମ୍ପନ କରି ଶୁଭେନ୍ଦ୍ରକୁ ଦେଖାଇ ଦେଲା ।

ଉଦ୍ଦେଶ୍ୟ–ସେ କହିବେ।

ଶୁଭେନ୍ଦ୍ର ବୁଝିପାରି ମନେମନେ ଅସ୍ୱସ୍ତି ବୋଧ କଲେହେଁ, ତା'ର କୌଣସି ଚିହ୍ନ ମୁହଁରେ ଦେଖାଗଲା ନାହିଁ । ସେ ସହାସ୍ୟ ମୁଖରେ କହିଲା –

"ନାହିଁ ନାହିଁ, ଭୟଙ୍କର ବଦନାମ୍ ହେବ।"

ଜିଜ୍ଞାସୁ ଭାବରେ ନର୍ସ ଶୁଭେନ୍ଦ୍ରକୁ ଚାହିଁ ପଚାରିଲା –

"ବଦନାମ୍ ?"

ଶୁଭେନ୍ଦ୍ର କହିଲା –

"ବଦନାମ୍ ନୁହେଁ ? ଗୋଟିଏ ଭଲ ସଙ୍ଗୀତକୁ ଗାୟକ ମୁଖରୁ ନ ଶୁଣି ଦଦରା ରେକର୍ଡ ମାର୍ଫତରେ ଶୁଣିଲେ ସଙ୍ଗୀତ, ଗାୟକ ଆଉ ରେକର୍ଡ, ସମସ୍ତଙ୍କର ବଦନାମ୍ ।"

"ଅର୍ଥ ?"

ବିସ୍ମିତ ଭାବରେ ନର୍ସ ପଚାରିଲା ।

ଶୁଭେନ୍ଦ୍ର କହିଲା –

"ଅର୍ଥ ଅତି ସହଜ–ଭାବନ୍ତୁ ତ, ମାଳାକାର ହାତରୁ ଫୁଲଗୁଡ଼ି ନ ଆଣି କୁମ୍ଭକାର ହାତରୁ ଆଣିଲେ ଫୁଲର ଅବସ୍ଥା ଯା ହେବ–ଅର୍ଥାତ୍ ମାଟି ହୋଇଯିବ, ନୁହେଁ ?"

କହିସାରି ଶୁଭେନ୍ଦ୍ର ନର୍ସ ମୁହଁକୁ ଚାହିଁ ହସିଦେଲା ।

ଉଚ୍ଛ୍ୱସିତ ସ୍ୱରରେ ହସିଉଠି ନର୍ସ ପଚାରିଲା–

ତା ହେଲେ ଆପଣ ହେଉଛନ୍ତି ଦଦରା ରେକର୍ଡ ଆଉ କୁମ୍ଭକାର ?

"ନୁହେଁ ?"

ଶୁଭେନ୍ଦ୍ର ସହାସ୍ୟ ଆଖିରେ ଚାହିଁ କହିଲା ।

ଯୁବତୀ ମନୋଯୋଗ ସହିତ ଦୁହିଁଙ୍କ କଥା ଶୁଣୁଥିଲା ।

ଶୁଭେନ୍ଦ୍ର ଫୁଲ ଉଦାହରଣ ଦେଲାବେଳକୁ ତା' ମନରେ ଆନନ୍ଦର ଉଚ୍ଛ୍ୱାସ ଜମାହୋଇଆସୁଥିଲା । କଥା ଶେଷରେ ଓଢ଼ଣାକୁ ଶକ୍ତ ଭାବରେ ମୁଠାଇଧରି ମୃଦୁ ସ୍ୱରରେ ହସିଉଠିଲା ।

ଯୁବତୀର ଏ ହାସ୍ୟ ଟିକକ ଯେପରି ଗୋଟିଏ ମାଦକଭରା ସଙ୍ଗୀତର ତରଙ୍ଗରେ ସମସ୍ତଙ୍କୁ ଭସାଇ ଘେନିଗଲା । ସମସ୍ତେ ତା'ସହିତ ଯୋଗଦେଇ ଏକସମୟରେ ହସିଉଠିଲେ ।

ମୁହୂର୍ତ୍ତରେ ନର୍ସ ସହର୍ଷ ସ୍ୱରରେ ଶୁଭେନ୍ଦ୍ରକୁ କହିଲା–

"ତା' ହେଲେ ଦେଖୁଛି, ଆପଣ ଏ ବଦନାମ୍ ବହିବା ଭୟରେ କହିବେ ନାହିଁ ?"

ଶୁଭେନ୍ଦ୍ର ଉଦ୍‌ବେଗର ସହିତ କହିଉଠିଲା–

"ନାହିଁ ନାହିଁ, ସେ ନିଜେ କହନ୍ତୁ । ମୁଁ ଜାଣେ, ତାଙ୍କ ପାଟିରେ ତାଙ୍କ ନାଁ ଖୁବ୍ ଚମତ୍କାର ଶୁଭିବ ।"

ସକୌତୁକରେ ନର୍ସ ଯୁବତୀ ପିଠିରେ ହାତ ଦେଇ ଛଳମିଶା କଅଁଳ ସ୍ୱରରେ କହିଲା–

"କୁହଗୋ, ତମେ କୁହ– ତମରି ପାଟିରେ କୁଆଡ଼େ ତମ ନାଁ ଚମତ୍କାର ଶୁଭିବ ।"

କହିସାରି ଶୁଭେନ୍ଦ୍ର ଉପରେ ଈଷତ୍ ପରିହାସ ଦୃଷ୍ଟି ପକାଇ, ଡାହାଣ ସ୍କନ୍ଧ ଆଡକୁ ମୁହଁକୁ ବୁଲାଇଆଣିଲା ।

ଶୁଭେନ୍ଦ୍ର ବହି ଖଣ୍ଡକ ଉପରେ ଦୃଷ୍ଟି ରଖି ନିରୁଦ୍ଦିଷ୍ଟ ଭାବରେ ଖେଳାଉଥିଲା– ନର୍ସର ମୁହଁଛଟା ଦେଖିପାରିଲା ନାହିଁ ।

ଯୁବତୀ କହିବାକୁ ଉତ୍କଣ୍ଠିତ ହେଲା, ମାତ୍ର ହଟକାରୀ ଲଜ୍ଜା ତା' କଣ୍ଠ ନିକଟରେ ବାଷ୍ପ ଜମାଇଦେଇ ପଥରୁଦ୍ଧ କରିଦେଲା । ସେ କହିପାରିଲା ନାହିଁ ।

ନର୍ସ ପୁଣି ତାର ବାହୁକୁ ବୁଲାଇବାକୁ ଚେଷ୍ଟା କରି ହସିହସି କହିଲା–

"ଲଜ୍ଜା କରିବାର ତ କିଛି କାରଣ ନାହିଁ । ସ୍ୱାମୀଙ୍କ ଆଗରେ ନିଜ ନାମ କହିବ ତ କିଛି ଦୋଷାବହ ନୁହେଁ ! ଆପଣମାନଙ୍କ ହିନ୍ଦୁଧର୍ମରେ ସ୍ୱାମୀଙ୍କ ନାମ ଧରିବା ସିନା ମନା ଅଛି, ନିଜ ନାମ ଧରିବାକୁ ତ ମନା ନାହିଁ ?"

ନର୍ସ କଥା ଶୁଣି ଶୁଭେନ୍ଦ୍ରର ଭ୍ରୂକୁଞ୍ଚିତ ହୋଇଗଲା ।

କିନ୍ତୁ ପରିସ୍ଥିତି ସମ୍ଭାଳିନେବା ପାଇଁ ମନେମନେ ଇତସ୍ତତଃ କରୁକରୁ ସେ ଆତ୍ମସମ୍ୱରଣ କରିନେଲା ।

ତରୁଣୀ ଅତି ନିଃସନ୍ଦେହ ହେଲା ଯେ ଏ ନିଶ୍ଚୟ ସେହି, କିଛି ଭୁଲ୍ ହୋଇ ନାହିଁ । ନିଶ୍ଚୟତାର ମୋହରେ, ସେ ସଲଜ୍ଜ ଭାବରେ ଓଢ଼ଣା ଭିତରୁ ଈଷତ୍ ଶୁଭେନ୍ଦ୍ରକୁ ଚାହିଁ ପୁଣି ଆଖି ତଳକୁ କଲା । ଭାବିଲା କହିବ; କିନ୍ତୁ କ'ଣ କହିବ କିଛି ଠିକ୍ କରି ପାରିଲା ନାହିଁ । କାରଣ, ତାକୁ ଘରେ ଡାକନ୍ତି ଫୁଲ ବୋଲି; କିନ୍ତୁ ମାଷ୍ଟ୍ରାଣୀ ସେ ନାମ ତା'ର ବଦଳାଇଦେଇଛି । କିଛିକ୍ଷଣ ଭାବି ସେ ଠିକ୍ କଲା, ସେହି ମାଷ୍ଟ୍ରାଣୀ ଦେଇଥିବା ନାମ ହିଁ କହିବ । କହିବାକୁ ଉଦ୍ୟତ ହେଲା; କିନ୍ତୁ କଥା ଜିଭ ଅଗରୁ ଫେରିଗଲା । ଗୋଟାଏ ଅର୍ଥଶୂନ୍ୟ ଲଜ୍ଜା ତା' ଜିଭକୁ ସଙ୍କୁଚିତ କରିଦେଲା ।

ପୁଣି ମୁହୂର୍ତ୍ତକ ପରେ ମନରେ ଦମ୍ଭ ସଞ୍ଚୟ କରି ଅସ୍ପଷ୍ଟ ମୃଦୁସ୍ୱରରେ କହିଲା –

"ମୋ' ନାଁ ପୁଷ୍ପ ।"

ତା'ର ଏହି କଥା ପଦକର ସୌରଭରେ ଘରମୟ ଆମୋଦିତ ହୋଇ ଉଠିଲା ଯେପରି ।

ଶୁଭେନ୍ଦ୍ର ଉଦ୍‌ବିଗ୍ନ ମନରେ ନିଶ୍ୱାସ ଦମନ କରି, କାନର ସୂକ୍ଷ୍ମ ପରଦାକୁ ସଜାଗ କରି ଅପେକ୍ଷା କରୁଥିଲା । ତାକୁ ଶୁଭିଲା, ଯେପରି ଦୂର ପର୍ବତ-ଗହ୍ୱର ମଧ୍ୟରୁ ମୃଦୁ ମଧୁର ବୀଣା ଝଙ୍କାର ଝରିପଡିଲା । ଆନନ୍ଦର ଆତିଶଯ୍ୟରେ ତା' ଦେହସାରା ଈଷତ୍ କମ୍ପନ ଖେଳିଗଲା । ସେ ଯଥାସାଧ୍ୟ ନିଜକୁ ଦମନ କରିବା ପାଇଁ ଚେୟାର ଉପରକୁ ସମ୍ପୂର୍ଣ୍ଣ ଭାବରେ ଆଉଜିପଡି ଉପରକୁ ଚାହିଁରହିଲା ।

ନର୍ସ 'ବାଃ, କି ସୁନ୍ଦର ନାଚିଁ' କହି ଶୁଭେନ୍ଦ୍ର ଆଡକୁ ସଂପ୍ରଶଂସ ଦୃଷ୍ଟିରେ ଅନାଇଲା, କିନ୍ତୁ ଶୁଭେନ୍ଦ୍ର ଜାଣିପାରିଲା ନାହିଁ ।

ସଙ୍ଗୀତର ମୂର୍ଚ୍ଛନା ଭଳି ତରୁଣୀର ମଧୁମୟ କଣ୍ଠସ୍ୱର ଘର ଭିତର ପବନକୁ ଆନନ୍ଦରେ ପାଗଳ କରିଦେଲା । ଉଭୟେ ବିମୁଗ୍‌ଧା ଭାବରେ କିଛି ସମୟ ବସିରହିଲା ପରେ ନର୍ସ ସ୍ତବ୍‌ଧତାଭଙ୍ଗରେ ଶୁଭେନ୍ଦ୍ରକୁ କହିଲା—

"ମୁଁ ଦେଖୁଛି ଶୁଭେନ୍ଦ୍ରବାବୁ, ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯାଇଛନ୍ତି । ମୋର ରହିବାର ଆଉ ଆବଶ୍ୟକତା ମୁଁ ବୋଧ କରୁନାହିଁ ।"

ତରୁଣୀର କଥା ଶୁଭିଲା ପରେ ଆଉ କୌଣସି ଶବ୍ଦ କାନରେ ଶୁଣିବାକୁ ଶୁଭେନ୍ଦ୍ର ପ୍ରସ୍ତୁତ ନଥିଲା, ତଥାପି ଶିଷ୍ଟତାହାନି ହେବା ଆଶଙ୍କାରେ ସିଧା ଭାବରେ ବସି ସହଜ ଭାବରେ କହିଲା –

"ଡାକ୍ତର ବାବୁ ଯେ ଛ' ମାସ..."

ନର୍ସ କଥା ସାରିବାକୁ ନ ଦେଇ କହିଉଠିଲା –

"ମୁଁ ତ ଆପଣଙ୍କର ନିଜ ଲୋକ । ଛ' ମାସ କାହିଁକି, ଯେତେବେଳେ ଇଚ୍ଛା ସେତେବେଳେ ଆସି ଦେଖିଯିବି । ଏଠି ଆଉ ରହିବି କାହିଁକି ?"

ନର୍ସ 'ମୁଁ ତ ଆପଣଙ୍କର ନିଜର ଲୋକ' କହିଲା ବେଳେ ପୁଷ୍ପ ଈଷତ୍ ସାରଙ୍ଗି ହୋଇ ବସି, ଏକପାଖକୁ ମୁଣ୍ଡବୁଲାଇ କାନଡେରି କଥା ଶୁଣିବାରେ ମନୋନିବେଶ କଲାପରି ଜଣାଗଲା ।

"ଯାହା ହେଉ ଆପଣ ଛ' ମାସଯାକ ବେତନ ପାଇବେ" କହି ଶୁଭେନ୍ଦ୍ର ନର୍ସ ମୁହଁକୁ ଚାହିଁଲା ।

ନର୍ସ 'ଆପଣଙ୍କ ଇଚ୍ଛା' କହି ଉଠି ନମସ୍କାର କଲା, ହସିହସି କହିଲା—

"ଆସୁଛି; ଭୁଲିଯିବେ ନାହିଁ ।"

ଶଭେନ୍ଦ୍ର ପ୍ରତିନମସ୍କାର କରି ହସିହସି କହିଲା –

"ଆପଣ ଯେତେ ଉପକାର କଲେ, ନ ଭୁଲିଗଲେ କୃତଜ୍ଞତା ଜିନିଷଟିକୁ ବାଦ୍ ଦେବାକୁ ହେବ ଯେ । ହଉ, ଆପଣଙ୍କର ରୋଗୀଙ୍କୁ ବୁଝେଇଦେଇ ଯାଆନ୍ତୁ ।"

ନର୍ସ ସାବଧାନତାର କେତୋଟି କଥା କହି ପୁଷ୍ପକୁ ନମସ୍କାର କରି କହିଲା–

"ମୁଁ ଆସୁଛି, ଥାଆନ୍ତୁ ।"

ପୁଷ୍ପ ପ୍ରତିନମସ୍କାର ନକରି ଓଢ଼ଣା ଭିତରୁ କେବଳ ମାତ୍ର ସଜଳ ଆଖି ଦୁଇଟିରେ ନର୍ସ ମୁହଁକୁ ବଲବଲ କରି ଚାହିଁରହିଲା ।

ନର୍ସ ପୁଷ୍ପର ମୁହଁକୁ ଭଲଭାବରେ ଦେଖିବାକୁ ତା' ହାତ ଧରି ସୋଫାରୁ ଉଠାଇ ନେଇଗଲା କିଛି ଦୂରକୁ । କାରଣ ପୁଷ୍ପର ଚିକିତ୍ସା କରିବା ଦିନଠାରୁ ସେ ତା' ମୁହଁଟି ଭଲ ଭାବରେ ଦେଖିପାରିନଥିଲା । ତା'ର ଅଜ୍ଞାନ ଅବସ୍ଥାରେ ମଧ୍ୟ ଶୁଭେନ୍ଦ୍ର ବହୁମୂଲ୍ୟ ପଦାର୍ଥ ସମ୍ପାଦି ରଖିଲା ପରି, ତା' ମୁହଁଟିକୁ ଓଢ଼ଣାରେ ଘୋଡାଇ ଦେଇଥାଏ । ଏହି ଘୋଡାଇରଖିବା ଭିତରେ ଶୁଭେନ୍ଦ୍ରର କୌଣସି ପ୍ରକାର ରକ୍ଷଣଶୀଳତା ନଥିଲା । ଥିଲା ତା' ନିଜ ମନକୁ ସଂଯତ କରି ରଖିବାର ଉଦ୍ଦେଶ୍ୟ । ଏଥିପାଇଁ ନର୍ସ ପୁଷ୍ପ ମୁହଁକୁ ଦେଖି ମଧ୍ୟ ଦେଖିନଥିଲା । ସେ ଆଦରର ସହିତ ମୁହଁଟିକୁ ତା'ର ଟେକିଧରି କ'ଣ କହିବାକୁ ଉଦ୍ୟତ ହେଉଥିଲା, କିନ୍ତୁ ପୁଷ୍ପର ଆଖି ତା' ଆଖି ସହିତ ମିଳିତ ହେଲାକ୍ଷଣି, ବିମୁଗ୍ଧ ବିସ୍ମୟର ସହିତ ସେ ପୁଷ୍ପର ଅପରୂପ ରୂପଲାବଣ୍ୟରେ ମୋହିତ ହୋଇ ତାକୁ ଚାହିଁରହିଲା । ତା'ର ମନେହେଲା, ଜଗତଯାକର ଶ୍ରେଷ୍ଠ ସୌନ୍ଦର୍ଯ୍ୟର ସାର କିଏ ସଂଗ୍ରହ କରି ଗୋଟିଏ ସ୍ଥାନରେ ଅଜାଡିଦେଇଛି । ସେ ନିଜେ ନାରୀ ହେଲେ ହେଁ, ନାରୀଠାରେ ଯେ ଏତେ ରୂପ ସମ୍ଭବେ, ସେ କଳ୍ପନା ବି କରିପାରିଲା ନାହିଁ । ପୁଷ୍ପକୁ ଚୁମ୍ବନ କରିବାକୁ ତା'ର ଇଚ୍ଛା ହେଲା । କିନ୍ତୁ ଭଦ୍ରତାନୁରୋଧରେ ସେ ତାହା କରି ନପାରି କେବଳ ଦୁଇ ଆଙ୍ଗୁଠିରେ ତା' ଗାଲଟିକୁ ଟିପିଦେଇ ହସିହସି ପଚାରିଲା –

"ନମସ୍କାର କଲ ନାହିଁ ?"

ଶୁଭେନ୍ଦ୍ର ଶୁଣିପାରି କହିଉଠିଲା –

"ସେ ସେଇଟା ଫେରାଇଦେବାକୁ ଚାହାଁନ୍ତି ନାହିଁ । ଉଦ୍ଦେଶ୍ୟ, ତମେ ଯାଅ ନାହିଁ ।"

ନର୍ସ ଶୁଭେନ୍ଦ୍ରର ସମବୟସୀ । ସେ କୌତୁକ କରି ପୁଷ୍ପର ଚିବୁକଟିକୁ ହଲାଇଦେଇ ହସିହସି କହିଲା –

"ମୁଁ ଏଠି ରହିଲେ ତମେ କ'ଣ ଘାସ କାଟିବ ?"

ଏହା କହି ଶୁଭେନ୍ଦ୍ର ପ୍ରତି କଟାକ୍ଷପାତ କରି, 'ମୁଁ ଆସୁଛି' କହି ପୁଣି ପୁଷ୍ପର ଚିବୁକଟିକୁ ହଲାଇଦେଇ ହସିହସି ପଛକୁ ଚାହିଁଚାହିଁ ସେ ଚାଲିଗଲା ।

ପୁଷ୍ପ ନିରୀହ ଅସହାୟ ପରି ଚାହିଁଥିଲା । ଦୂରରେ ପାହାଚରୁ ଓହ୍ଲାଇବାର ସାଣ୍ଡଲର ଚଟ୍‌ପଟ ଶବ୍ଦ କ୍ରମେ ନିଃଶବ୍ଦ ହୋଇଗଲା ।

ଶୁଭେନ୍ଦ୍ର ପୁଷ୍ପର ଏହି ନ ଯଯୌ ନ ତସ୍ଥୌ ଅବସ୍ଥାକୁ ଚାହିଁ ଭାବୁଥିଲା –

ଏହି ଲକ୍ଷ୍ମୀ ପ୍ରତିମାକୁ ଘାସ କଟାଇଲା ଭଳି ଦାନବ ହିନ୍ଦୁସମାଜ, ବିଶେଷତଃ ଏହି ଓଡ଼ିଆଜାତି ବ୍ୟତୀତ ଜଗତରେ ଦ୍ୱିତୀୟ କେହି ଜନ୍ମ ବି ହୋଇ ନାହିଁ ।

## ପାଞ୍ଚ

ପୁଷ୍ପ ଏପର୍ଯ୍ୟନ୍ତ ଗୋଟିଏ ଗତିଶୀଳ ମଟରରେ ବସିଲାପରି ତିନିମାସ କଟେଇ ଦେଲା । ଗାଡିର ଗତିବେଗ ଆଉ ପହଞ୍ଚିବାର ନିର୍ଦ୍ଦିଷ୍ଟ ସ୍ଥାନ ସେ ଜାଣିପାରୁ ନଥିଲା । ନର୍ସଟି ଚାଲିଯିବା ପରେ ତାକୁ ବୋଧହେଲା ଯେପରି ସେ ମଟରରୁ ଓହ୍ଲାଇ ଭୂମିରେ ପାଦ ଦେଇ ଛିଡାହୋଇଛି । କେଉଁଦିଗକୁ ପାଦ ପକାଇବ, ଆଗକୁ କି ପଛକୁ, କିଛି ଠିକ୍ କରିପାରୁନାହିଁ । କେତେ ଭାବନା ଲହରୀପରି ଗୋଟିକ ପରେ ଗୋଟିଏ ଆସି ତା' ମନ ମଧ୍ୟରେ ଆଘାତ କରି ଚାଲିଯାଇଛନ୍ତି । କୌଣସିଟି ସେ ଧରିରଖିପାରୁନାହିଁ, ଯାହାକୁ ସେ ଖୁବ୍ ଜୋରକରି ଧରୁଛି ସେ ତାକୁ ବେଶି ଭାବରେ ଆଘାତ କରି ଚାଲିଯାଉଛି । ଏହିପରି ଆଘାତ ପରେ ଆଘାତ ସହି ସେ ଆଉ ନିଜକୁ ସମ୍ଭାଳି ନପାରି କାନ୍ଦିପକାଇ, ଲୁଗାକାନିରେ ଲୁହ ପୋଛିବାକୁ ଲାଗିଲା । ଭାବନା ଭିତରେ ସେ ଭୁଲିଯାଇଥିଲା ଯେ ଶୁଭେନ୍ଦ୍ର ତା' ପଛରେ ବସିଛି ବୋଲି ।

ପୁଷ୍ପ କାନ୍ଦୁଛି ବୁଝିପାରି ଅଶେଷ ସହାନୁଭୂତି ଓ ବିପୁଳ ମମତାବଶରେ ଶୁଭେନ୍ଦ୍ରର ଅନ୍ତର ବିଗଳିତ ହୋଇଗଲା । ସେ ବସିଥିବା ଚେୟାରରୁ ଉଠି ଆସି ପୁଷ୍ପ ଆଗରେ ଛିଡାହୋଇ, କୋମଳ ମଧୁର କଣ୍ଠରେ କହିଲା–

"ଏଠି ଯେ ଛିଡ଼ାହୋଇ ରହିଲ ! ସେ ନର୍ସ ପୁଣି ଆସିବ ଯେ । ତାଙ୍କୁ ଡାକି ପଠାଉଛି । ମୁଁ ଜାଣୁଛି, ସେ ନ ରହିଲେ ତମର ଭାରି କଷ୍ଟ ହେବ ।"

ଲଜ୍ଜାରେ ପୁଷ୍ପ ଲାଜକୁଳୀ ଲତାପରି ସଂକୁଚିତ ହୋଇଗଲା ଏବଂ କଚ୍ଛପ ପରି ଓଢ଼ଣାର ଭିତରକୁ ମୁହଁଟିକୁ ଢାକିନେଇ, ଆତ୍ମଗୋପନ କରିବାକୁ ଚେଷ୍ଟା କଲା ।

ପୁଷ୍ପର ଏହି ଶଙ୍କିତ ଅସହାୟ ଅବସ୍ଥା ଦୂର କରିଦେବା ଉଦ୍ଦେଶ୍ୟରେ ଶୁଭେନ୍ଦ୍ର ଅତି ନିଜର ପରି କହିଲା–

"ଆସ, ଛାତ ଉପରେ ଟିକେ ବୁଲି ଆସିବ ।"

ପୁଷ୍ପ ସେହିପରି ପ୍ରସ୍ତର ମୂର୍ତ୍ତିଟିପରି ଛିଡାହୋଇରହିଲା । ଲଜ୍ଜା ଆଉ ଅପରିଚିତତାର ଦ୍ୱିଧା ଭାବ ତାକୁ କର୍ତ୍ତବ୍ୟହୀନ କରିଦେଲା । ପାଦ ତା'ର ଏପାଖ ହେଲାନାହିଁ, ନା ସେପାଖ ହେଲାନାହିଁ ।

ଶୁଭେନ୍ଦ୍ର ପୁଷ୍ପର ଏହି ଭାବ ଲକ୍ଷ୍ୟ କରି ମନମନେ ଠିକ୍ କଲା ଯେ ସେ ତାକୁ କଥା କୁହାଇପାରିଲେ ତା'ର ଏହି ସଙ୍କୋଚ ଭାବ ଦୂରହୋଇଯିବ ଏବଂ ସେ ନିଃସଙ୍ଗତା ଓ ନିର୍ଜନତା ଅନୁଭବ କରିପାରିବ ନାହିଁ । ଏହା ଭାବି ସେ ପୁଷ୍ପର ଉଷ୍ମ କୋମଳ ହାତକୁ ନିଜର ହାତ ଭିତରକୁ ନେଇ, ଈଷତ୍ ଆକର୍ଷଣ କରି ଅଭ୍ୟସ୍ତପରି ସହଜ ମୃଦୁ ସ୍ୱରରେ କହିଲା, ଆସ, ଛାତ ଉପରେ ବୁଲିଆସିବା ।

ଶୁଭେନ୍ଦ୍ରର ଏହି ମୃଦୁ ଆକର୍ଷଣ ପୁଷ୍ପ ମନର ଘନୀଭୂତ ଲଜ୍ଜାକୁ ଟହଲାଇ ଦେଇ, ତାର ଅନ୍ତଃରରେ, ବାହାରେ ଉଚ୍ଛ୍ୱାସର ଗୋଟିଏ ଗୋପନ ପରଶ ବୁଲାଇଦେଲା । ତାର ସ୍ତମ୍ଭିତ ପାଦ ଆଙ୍ଗୁଳିର ଅଗ୍ରଭାଗରେ ଗତିଶୀଳତାର ଆବେଗ ଫୁଟିଉଠିଲା ।

ପାହାଚ ଆରମ୍ଭରେ ଶୁଭେନ୍ଦ୍ର ହାତ ଛାଡିଦେଇ 'ଆସ' ବୋଲି କହି, ଶିଡ଼ି ଆରୋହଣ କରିବାକୁ ଲାଗିଲା । ଚାରିପାଞ୍ଚଟା ଶିଡ଼ି ଅତିକ୍ରମ କଲା ପରେ ପଛକୁ ଚାହିଁ ଦେଖିଲା, ପୁଷ୍ପ ଗୋଟିଏ ମାତ୍ର ଶିଡ଼ି ଉପରକୁ ଉଠିଛି । ସେ ପୁଣି ଅବତରଣ କରି ପୁଷ୍ପର ହାତକୁ ନିଜର ହାତଟି ବଢ଼ାଇଦେଲା; କିନ୍ତୁ ଲଜ୍ଜାରେ ପୁଷ୍ପର ହାତ ଉଠିଲା ନାହିଁ । ସେ ନିଜେ ପୁଣି ପୁଷ୍ପର ହାତଟି ସଂଗ୍ରହ କରି ଉଠିବାକୁ ଲାଗିଲା । ଉଭୟେ ଯାଇ ଛାତଉପର ପାରାପେଟ୍ ପାଖରେ ଛିଡ଼ାହେଲେ ।

ପୁଷ୍ପ ସେହିପରି ଲଜ୍ଜାବନତ ଭାବରେ ଛିଡାହୋଇରହିଲା ।

ପୁଷ୍ପର ପେଲବ କରପଲ୍ଲବର ସ୍ନିଗ୍ଧ କୋମଳ ସ୍ପର୍ଶସୁଖ ପାଇଁ ଓ ତା'ର ଲଳିତ ମଧୁର କଥା ପଦେ ଶୁଣିବା ପାଇଁ ଶୁଭେନ୍ଦ୍ରର ଆଗ୍ରହ ଏତେ ବଢ଼ିଯାଇଥିଲା ଯେ ତା'ର ଦେହ ଭିତରେ ତା'ର ଶ୍ରବଣେନ୍ଦ୍ରିୟ ଓ ସ୍ପର୍ଶେନ୍ଦ୍ରିୟଙ୍କ ମଧ୍ୟରେ ତୁମୁଳ ଦଳାଦଳି ଲାଗିଗଲା, କିଏ କା'ର ଦାବି ଅଗ୍ରେ ହାସଲ କରିବା ପାଇଁ ।

ଉଭୟଙ୍କ ଆସନ ସମାନ ହେଲେ ହେଁ ସ୍ପର୍ଶେନ୍ଦ୍ରିୟ ଖୁବ୍ ଶକ୍ତିଶାଳୀ ଥିବାରୁ ସେ ହିଁ ଜୟୀ ହେଲା; କିନ୍ତୁ ବିଚାରକ ବିବେକ ସେଥିରେ ମତ ଦେଲା ନାହିଁ, କହିଲା—

"କୌଣସି ଯୁବତୀକୁ ବିପଦବେଳେ ସାହାଯ୍ୟ କରିବାକୁ ଯାଇ ଯେତିକି ଲଘିଷ୍ଠ ସ୍ପର୍ଶର ଆବଶ୍ୟକ, ତା' ବ୍ୟତୀତ ଅଧିକ ସ୍ପର୍ଶ କରିବାର ଅଧିକାର ତ କାହିଁ ସଭ୍ୟତାର ଆଇନ୍‌କାନୁନ୍‌ରେ ନାହିଁ—କେବଳ ମାତ୍ର ନିଜର ବିବାହିତା ପତ୍ନୀ ବ୍ୟତୀତ ।

ସ୍ପର୍ଶେନ୍ଦ୍ରିୟ କହିଲା—

"ଯଦି ଆଇନ ଲଙ୍ଘନ କରାଯାଏ ?"

ବିବେକ—

"ଆଇନ୍ ଲଙ୍ଘନର ଯାହା ଦଣ୍ଡ ଅଛି, ଭୋଗକରିବାକୁ ହେବ ।"

ସ୍ପର୍ଶେନ୍ଦ୍ରିୟ—

"ସେ ଦଣ୍ଡର ସ୍ୱରୂପ କ'ଣ ଆପଣଙ୍କର ଆଇନରେ କିଛି ଅଛି ?"

ବିବେକ—

"ନାହିଁ, ଅଛି ଅନ୍ୟ ହାତରେ—ସମାଜ ହାତରେ, ଯାବଜ୍ଜୀବନ କାରାଦଣ୍ଡ ବରଣ କରିପାରିବ ?"

ସ୍ପର୍ଶେନ୍ଦ୍ରିୟ ଚମକିପଡି ପଚାରିଲା—

"ଆଉ ମୋ' ପ୍ରତିଦ୍ୱନ୍ଦ୍ୱୀର ?"

ବିବେକ—

'ତା' ପ୍ରତି କିଛି ବିଧାନ ନାହିଁ । ତା'ର ଯା ଇଚ୍ଛା ତା' କରିପାରେ ।"

ସ୍ପର୍ଶେନ୍ଦ୍ରିୟ ଶୁଣି ଏକାବେଳକେ ରାଗରେ ଲାଲ ହୋଇଗଲା । ଦୁର୍ଦ୍ଦାନ୍ତ ପ୍ରତାପ ତା'ର । ବିଚାର କରି ଆଇନ ଶୃଙ୍ଖଳାରେ ତାକୁ ବନ୍ଦ କରି ରଖିହେଲା ନାହିଁ ।

ଶୁଭେନ୍ଦ୍ର ସ୍ନେହ-ସିକ୍ତ କଣ୍ଠରେ କହିଲା—

"ଆଚ୍ଛା, ତମେ ଏପରି ଜାକିଜୁକି ହୋଇ ଛିଡାହୋଇ ରହିଲ କାହିଁକି ?"

ପୁଷ୍ପ ଶୁଭେନ୍ଦ୍ରର କଥା ନ ଶୁଣି ପୂର୍ବ ପରି ଅବିଚଳ ମର୍ମର ପ୍ରତିମାଟି ପରି ଛିଡ଼ା ହୋଇ ରହିଲା ଦେଖି, ଧୀରେଧୀରେ ତା' ହାତ ନିଜ ହାତ ଭିତରକୁ ଆଣି ଆଉଁଶି ଦେଉଦେଉ ଶୁଭେନ୍ଦ୍ର କହିଲା—

"ପଦାକୁ ଚାହିଁ ଦେଖୁନା, ନଈ ସେପାରି ସେ ଦୂର ତୋଟା ସେପାଖରେ–ଯେଉଁଠି ଆକାଶ ମାଟି ଦେହରେ ମିଶିଯାଇଛି, ପାଉଁଶିଆ-ନୀଳ ପାହାଡ଼ଗୁଡ଼ିକ କେଡ଼େ ସୁନ୍ଦର ଦିଶୁଛି ।"

ପୁଷ୍ପର ତୀବ୍ର ଲଜ୍ଜା ଶୁଭେନ୍ଦ୍ରର ଅଙ୍ଗୁଳି ସଞ୍ଚାଳନରେ ଶାନ୍ତ ହୋଇଆସୁଥିଲା, ସେ କିଞ୍ଚିତ୍ ମୁଣ୍ଡଟେକି ଓଢ଼ଣାର ଅନ୍ତରାଳରୁ ଚାହିଁବାକୁ ଚେଷ୍ଟା କଲା; କିନ୍ତୁ ଓଢ଼ଣାଟି ନାସିକାର ତଳଯାଏ ଲମ୍ବିଥିବାରୁ ସେ କିଛି ଦେଖିପାରିଲା ନାହିଁ । ଇଚ୍ଛା ହେଲେ ମଧ୍ୟ ଓଢ଼ଣାକୁ ଟିକେ ମୁଣ୍ଡ ଉପରୁ ଖସାଇଦେବାକୁ ଲଜ୍ଜାରେ ତା'ର ହାତ ଚଳିଲା ନାହିଁ ।

ଶୁଭେନ୍ଦ୍ର ବୁଝିପାରି କୃତ୍ରିମ କ୍ଷୁଣ୍ଣ କଣ୍ଠରେ କହିଲା–

"ମୁଁ ତେବେ ଯାଉଛି, ଲାଜ କରନାହିଁ, ତମେ ବୁଲି ବୁଲି ସ୍ୱାଧୀନ ଭାବରେ ଦେଖ ।"

ଏହା କହି, ପୁଷ୍ପର ହାତ ଛାଡିଦେଇ ଯିବାକୁ ଅଗ୍ରସର ହେଲାବେଳେ, ପୁଷ୍ପ ତା' ଆଡକୁ ସରମ-କୁଣ୍ଠିତ ଭାବରେ ଈଷତ୍ ବୁଲିପଡିଲା । ଓଢ଼ଣାର ଅନ୍ତରାଳରେ ବେଳାଭୂମିର ତରଙ୍ଗପରି, କେତେକଥା ଆସି ତା'ର ଅଧରପ୍ରାନ୍ତରେ ପିଟିହୋଇ ଲେଉଟିଗଲା; କିନ୍ତୁ ପଦେ ହେଲେ ତାର ଅଧର-ବେଳାଭୂମି ଲଙ୍ଘନ କରିପାରିଲା ନାହିଁ । କଥା କହିବାର ପ୍ରବଳ ଇଚ୍ଛା ସତ୍ତ୍ୱେ ଦାରୁଣ ଲଜ୍ଜା ତା'ର କଣ୍ଠରୁଦ୍ଧ କରିଦେଲା ।

ଶୁଭେନ୍ଦ୍ର ଜାଣିପାରି ଫେରିଆସି, ଅତି ଆଦରର ସହିତ ପୁଷ୍ପର ଓଢ଼ଣାଟିକୁ ହାତରେ ଟେକିଦେଇ, ମମତାଜଡିତ ଅର୍ଦ୍ଧ-ସ୍ୱଗତ କଣ୍ଠରେ କହିଲା–

"ଆଖି ଆଗରେ ଏତେ ବଡ଼ କାନ୍ଥବାଡ଼ ରଖି, ଖୋଲା ଆକାଶ କିଏ ଦେଖିପାରେ ? ଅତି ରକ୍ଷଣଶୀଳ ମୁସଲମାନ ଲଳନା ମଧ୍ୟ ତାଙ୍କ ବୁର୍ଖା ଦେହରେ ଝରକା ରଖି ପଦାକୁ ଚାହାନ୍ତି ।"

ପୁଷ୍ପ ମୁହଁ ତଳକୁ କରିଥିଲା । ଓଢ଼ଣାଟି ଅପସରି ଯାଇ ଅତୁଳନୀୟ ଲଜ୍ଜାପ୍ରଫୁଲ୍ଲ ମୁଖମଣ୍ଡଳ ତା'ର, ମୁକ୍ତ ଆକାଶର ସ୍ନିଗ୍ଧ ଶୂନ୍ୟତା ଭିତରେ ଉଜ୍ଜ୍ୱଳତର ହୋଇ, ଦେବବାଳାର ସ୍ୱର୍ଣ୍ଣ ଲୀଳା କମଳସଦୃଶ ଫୁଟିଉଠିଲା । ଆଲୋକର ତୀବ୍ରତାରେ

ଭ୍ରୂ-ଯୁଗଳ ତା'ର କପାଳ ଉପରକୁ କୁଞ୍ଚିତ ହୋଇଗଲା ।

ଶୁଭେନ୍ଦ୍ର ନିର୍ନିମେଷ ଆଖିରେ ପୁଷ୍ପ ମୁହଁକୁ ଚାହିଁଥିଲା । ଭାବିଲା, "ନାରୀ ମୁଖରେ ଏହି ନମ୍ରଭୀରୁ ମାଧୁର୍ଯ୍ୟ ହିଁ ଯୁଗେଯୁଗେ କବି କାବ୍ୟର ଶ୍ରେଷ୍ଠ ଉପାଦାନ ହୋଇ ରହିଛି ।"

ଶ୍ରଦ୍ଧା ଆଉ ପ୍ରୀତିରେ ପୁଷ୍ପର ହୃଦୟ ପୂରିଉଠୁଥିଲା । ସେ ଅଳ୍ପ ମୁଣ୍ଡ ଉଠାଇ ଶୁଭେନ୍ଦ୍ରକୁ ସପ୍ରେମ କୃତଜ୍ଞ ଦୃଷ୍ଟିରେ ଚାହିଁଦେଲାକ୍ଷଣି, ଉତ୍‌ଫୁଲ୍ଲତାରେ ଚିତ୍ତ ତା'ର ବିଚଳିତ ହୋଇପଡ଼ିଲା, ଗଣ୍ଡ ଦୁଇଟି ତା'ର ଆରକ୍ତ ହୋଇଗଲା । ଅନୁରାଗର ସରମରେ ଆଖିପତା ନଇଁପଡ଼ି ଅଧରକୋଣକୁ ସ୍ମିତ କରିଦେଲା ।

ପୁଷ୍ପ ଦୃଷ୍ଟି ସଙ୍ଗରେ ଦୃଷ୍ଟି ମିଳିଲା ମାତ୍ରେ ଶୁଭେନ୍ଦ୍ର ଚମକିପଡ଼ିଲା ।

ସେ ପୁଷ୍ପର ସୌନ୍ଦର୍ଯ୍ୟ ଦେଖିଥିଲା ମାତ୍ର; କିନ୍ତୁ ନାରୀ-ସୌନ୍ଦର୍ଯ୍ୟର ନିର୍ଯ୍ୟାସ ହୃଦୟ-ବିପ୍ଳବକାରିଣୀ ଦୃଷ୍ଟି ତା'ର ଦେଖିନଥିଲା । ତା'ର ମନେହେଲା, ଏ ଚାହାଣି ସୁର-ସୁନ୍ଦରୀ ଶିରୋମଣି ଉର୍ବଶୀର ବି ନଥିଲା । ଥିଲେ ଇନ୍ଦ୍ର କେବେହେଁ ତାକୁ ଅଭିଶାପ ଦେଇ ମର୍ତ୍ତ୍ୟମାନବଙ୍କର ପ୍ରେମଭିକ୍ଷା କରିବାକୁ ପଠାଇନଥାନ୍ତେ ।

ପୁଷ୍ପ ମଧ୍ୟ ସର୍ବଦା ଲୋକ ସମାଗମ ହେତୁ ଏପର୍ଯ୍ୟନ୍ତ ଭଲ ଭାବରେ ଶୁଭେନ୍ଦ୍ରର ମୁହଁକୁ ଚାହିଁନଥିଲା । ବର୍ତ୍ତମାନ ଏହି ନିର୍ଜନ ମୂକ ଆକାଶତଳେ ସ୍ୱାଧୀନତା ପାଇ, ଶୁଭେନ୍ଦ୍ରର ମୁହଁକୁ ଚାହିଁଦେଇ ସେ ଏତେ ବିଚଳିତ ହୋଇପଡିଲା ଯେ ତା'ର ଇଚ୍ଛା ହେଲା, ଏହି ମୁହୂର୍ତ୍ତରେ ସେ ଲଜ୍ଜାବାଡକୁ ଠେଲିଦେଇ ତା'ର ସମସ୍ତ ଶରୀର ଶୁଭେନ୍ଦ୍ରର ପାଦତଳେ ଅନେଇ ଅଜାଡିଦିଅନ୍ତା ।

ପୁଷ୍ପର କଣ୍ଠସ୍ୱର ଶୁଣିଲାବେଳୁ ଶୁଭେନ୍ଦ୍ର ତା' ଠାରୁ ଆହୁରି କଥା ଶୁଣିବାକୁ ଲାଳାୟିତ ହୋଇଉଠୁଥିଲା ଏବଂ ତା' ପ୍ରତି ତା'ର ଆସକ୍ତି ବଢ଼ିଯାଇଥିଲା । ଏ ଚାହାଣିରେ ତାହା ଯେପରି ସହସ୍ର ଗୁଣରେ ବଢ଼ିଯାଇ, ତା' ଦେହରେ ପୁଷ୍ପର ଶରୀରସଙ୍ଗ ଲିପ୍‌ସା ଜାଗ୍ରତ କରିଦେଲା । ତା'ର କେବଳ ଇଚ୍ଛା ହେଲା, ପୁଷ୍ପ ଦେହରେ ଆଉଜିପଡିବାକୁ ।

ସେ ପୁଣି ପୁଷ୍ପର ଦୁଇ ପାପୁଲିକୁ ଆଞ୍ଜୁଳାଏ ଫୁଲପରି ନିଜର ଅଞ୍ଜଳି ଭିତରେ ଧରି, ତା'ର ଲଘୁ କୋମଳତା ଅନୁଭବ କରୁକରୁ ତାକୁ କଥା କୁହାଇବା ଉଦ୍ଦେଶ୍ୟରେ କ'ଣ କହିବାକୁ ଇତସ୍ତତଃ କରି କିଛି କହିପାରିଲା ନାହିଁ ।

ଶୁଭେନ୍ଦ୍ରର ଏହିପରି ଅବସ୍ଥା ଲକ୍ଷ୍ୟ କରି, ପୁଷ୍ପ ମୃଦୁମୃଦୁ ହସି ପାରାପେଟ୍ ଆଡ଼େ ମୁହଁ ବୁଲାଇନେଲାବେଳେ, ଶୁଭେନ୍ଦ୍ର ହାତରୁ ତା' ହାତ ଈଷତ୍ ଝିଙ୍କିହୋଇଗଲା ।

ହାତ ଛାଡିଦେଇ, ଶୁଭେନ୍ଦ୍ର ପୁଷ୍ପର ଡାହାଣ ପାଖରେ ପାରାପେଟ୍‌କୁ ପିଠି କରି ଆଉଜି ଛିଡାହେଲା । ସଂରାଗର ଉତ୍ତେଜନାରେ ତା'ର ସମସ୍ତ ଶରୀର ଝିମିଝିମି ହୋଇଯାଉଥିଲା । ସେ ନିଃସହାୟ ବିବ୍ରତ ଭାବରେ ପୁଷ୍ପ ମୁହଁକୁ ଚାହିଁରହିଲା ସତୃଷ୍ଣ ନୟନରେ ।

ପୁଷ୍ପ ମୁଣ୍ଡ ଉପରକୁ ଓଢ଼ଣା ଟାଣିଆଣି ସହାସ୍ୟ କୌତୂହଳରେ ଶୁଭେନ୍ଦ୍ରକୁ ଚାହିଁଦେଇ, ଆଖି ଫେରାଇନେଲା ।

ପୁଷ୍ପର ଏ ଚାହାଣି ଶୁଭେନ୍ଦ୍ରର ଦେହରେ ଗୋଟିଏ ମୋହର ପରଶ ଖେଳାଇ ଦେଲା ବିଦ୍ୟୁତ୍ ପରି । ସେ ତତ୍‌କ୍ଷଣାତ୍ ପୁଷ୍ପର ଡାହାଣ ହାତଟି ନିଜର ଡାହାଣ ହାତରେ ଧରି ମୃଦୁମୃଦୁ ପୀଡ଼ନ କରିବାକୁ ଲାଗିଲା ।

ପୁଷ୍ପ ତଳକୁ ଚାହିଁଥିଲା । ଶୁଭେନ୍ଦ୍ରର ମନର ଭାବ ବୁଝିପାରି, ତା'ର ଅଧର କୋଣରେ ହାସ୍ୟରେଖା ଫୁଟିଉଠି ଲାଗିରହିଲା ।

ଏଥିରେ ଶୁଭେନ୍ଦ୍ରର ଦେହ ଭିତରେ, ସୃଷ୍ଟିର ଚିରନ୍ତନ ଓ ପ୍ରଧାନତମ ବୁଭୁକ୍ଷା ଏତେ ଶକ୍ତ ଭାବରେ ଆସି ଧକା ମାଇଲା ଯେ ତା' ମନର ସୁଦୃଢ଼ ସଂଯମ ବନ୍ଧ ଯେପରି ଶକ୍ତିହୀନ ହୋଇପଡିଲା । କ୍ଷଣକାଳ ମୁଣ୍ଡ ତା'ର ଘୂରିଗଲା । ସେ ପ୍ରାଣପଣେ ନିଜକୁ କିଞ୍ଚିତ୍ ସମ୍ବରଣ କରି ପୁଷ୍ପର ହାତକୁ କେବଳ ଜୋର୍ କରି ଚାପିଧରିଲା ।

ପୁଷ୍ପ ଭିତରେ ମଧ୍ୟ ଏହା ଅପେକ୍ଷା କମ୍ ଘଟୁନଥିଲା । ଦୁଇଟି ଅଗ୍ନିକୁଣ୍ଡ ମଧ୍ୟରେ ଥିବା ସଂଯୋଜକ ପଦାର୍ଥଟି ଦୁଇଟିର ତାପ ଅନୁଭବ କଲାଭଳି, ଉଭୟଙ୍କ ତାପ, ମଝିରେ ଥିବା ହାତମୁଠାଟି ଅନୁଭବ କଲା । ପୁଷ୍ପ ମଧ୍ୟ ଶୁଭେନ୍ଦ୍ରର ହାତକୁ ଈଷତ୍ ଚାପ ଦେଲା । ପୁଷ୍ପର ଏହି ଅନୁମୋଦନ ଦ୍ୱାରା ଶୁଭେନ୍ଦ୍ରର ପ୍ରତ୍ୟେକ ନାଡୀ ସ୍ଫୀତ ଆଉ କ୍ଷିପ୍ତ ହୋଇଉଠିଲା ଉତ୍ତେଜନାରେ । ସେ ପ୍ରାୟ ଭାବିବା ଜ୍ଞାନଶୂନ୍ୟ ହୋଇପଡିଲା । ହଠାତ୍ ହାତ ଛାଡିଦେଇ, ପୁଷ୍ପର ପଛପଟୁ, ତା'ର ଦୁଇ ଗଣ୍ଡରେ ହାତଦେଇ ମୁଣ୍ଡକୁ ନିଜ ଆଡକୁ ଟାଣି ଆଣୁଆଣୁ ଘୋର ଅଶକ୍ତିଜଡିତ ଦରଦର କଣ୍ଠରେ ବ୍ୟଗ୍ରହୋଇ କହିଲା, ଏମିତି ମୁଣ୍ଡକୁ ସିଧା କରି ଆଗକୁ ଅନା !

ଶୁଭେନ୍ଦ୍ରର ଏ ଭାବ ପୁଷ୍ପ ଭଲ ଭାବରେ ବୁଝିପାରୁଥିଲା; କିନ୍ତୁ ଉତ୍କଟ ଲଜ୍ଜାଶୀଳା ନାରୀଜାତି ଛାତି ଫାଟିଗଲେ ବି ପାଟି ଫିଟାଏ ନାହିଁ । ସେଥିପାଇଁ ତା'ର ମନୋଭାବରେ କୌଣସି ବହିଃପ୍ରକାଶ ନ ହେଉଥିଲେ ମଧ୍ୟ, ଉତ୍ତେଜନାରେ ତା'ର ଛାତି ଫାଟିଆସୁଥିଲା । ଶୁଭେନ୍ଦ୍ର ତା' ମୁହଁ ନିକଟକୁ ମୁହଁ ନେବାର ଠିକ୍ ପୂର୍ବରୁ ପୁଷ୍ପର ଛାତି ପାଟି ବାଟଦେଇ ଯେପରି ଫାଟିପଡିଲା । ପୁଷ୍ପ କଳନାଦରେ ହସି ଉଠିଲା ।

ମେଘ ଦେହରେ ଥଣ୍ଡା ପବନ ଲାଗି ବର୍ଷା ହେଲା ପରି ପୁଷ୍ପର ସୁମଧୁର ହାସ୍ୟରେ ଶୁଭେନ୍ଦ୍ରର ଉତ୍ତେଜନା ହଠାତ୍ ଶୀତଳ ହୋଇଆସିଲା । ତା'ର ହାତ ଅବଶ ହୋଇ ପୁଷ୍ପର ଗଣ୍ଡରୁ ଖସିପଡିଲା । ଲଜ୍ଜା ଆଉ ଆତ୍ମଗ୍ଲାନିରେ ମୁହଁ ତା'ର ପାଣ୍ଡୁର ହୋଇଗଲା ।

ପୁଷ୍ପ ଆତ୍ମଦମନ କଲା ପାରାପେଟ୍‌କୁ ଆଉଜିପଡି ।

ଶୁଭେନ୍ଦ୍ର ପୁଷ୍ପଠାରୁ ହାତେ ଖଣ୍ଡେ ବ୍ୟବଧାନରେ ଛିଡାହୋଇ ନଈଆଡକୁ ଚାହିଁ ନିଜର ଭୁଲ୍‌ରେ ଅନୁତାପ କରିବାକୁ ଲାଗିଲା ।

ଉପରେ ଛୋଟ ଛୋଟ ପାଣ୍ଡୁର ମେଘଖଣ୍ଡ ସୂର୍ଯ୍ୟାସ୍ତର ସ୍ମାରକ ସ୍ୱରୂପ କିଞ୍ଚିତ୍ ରକ୍ତ ଆଭା ଦେହରେ ଧରି ମଦାଳସ ଗତିରେ ଭାସିଯାଉଛି । ନିମ୍ନରେ ପ୍ରସାରିତ ହରିତ୍ କ୍ଷେତ୍ରରେ ଅଖଣ୍ଡ ରୂପ, କ୍ରମେ ଅନ୍ଧକାରର ସ୍ନିଗ୍ଧ ଶୀତଳ ଝୀନ ଆବରଣରେ ମିଳେଇଆସୁଅଛି । ଜଣାଯାଉଛି, ଯେପରି ଦୁହିଁଙ୍କର ରୂପ ଅସୀମ ରହସ୍ୟମୟ ହୋଇ ବାହାରେ ଆତ୍ମପ୍ରକାଶ କରିଛି ।

ଉଭୟେ ନୀରବ ନିଶ୍ଚଳ ଭାବରେ କେତେ ସମୟ କଟାଇଦେଲେ, ଜାଣି ପାରିଲେ ନାହିଁ ।

ସନ୍ଧ୍ୟାର ଆଗମ ଲକ୍ଷ୍ୟ କରି, ଉଭୟେ ଉଭୟଙ୍କ ମୁହଁକୁ ଚାହିଁଦେଇ ପୁଣି ମୁହଁ ଫେରାଇନେଲେ । ସେତେବେଳେ ବର୍ଷା ପରେ ଶରତ୍ ଚନ୍ଦ୍ରମା ପରି ଦୁହିଁଙ୍କ ମୁହଁରୁ ଶାନ୍ତି-ମୟୂଖ ଝରିପଡୁଥିଲା ।

ଶୁଭେନ୍ଦ୍ର ପୁଷ୍ପକୁ କଥା କୁହାଇପାରିଲା ନାହିଁ କି ତା'ର ମଧୁର କଥା ଶୁଣି ପାରିଲା ନାହିଁ ।

ଏ ତିନିମାସ ହେଲା ଶୁଭେନ୍ଦ୍ର ପୁଷ୍ପର କୌଣସି କଥା ଶୁଣି ନଥିଲା । ତା'ଠାରୁ କଥା ଶୁଣିବାକୁ ଯାଇ, ଏପରି ଗୋଟିଏ ଘଟଣା ସୃଷ୍ଟି କରିବସିବ ବୋଲି ତା'ର ଭାବନାର ଅତୀତ ଥିଲା । ଆତ୍ମଧିକ୍କାର ଓ ଅନୁତାପରେ ତା' ଅନ୍ତର ଭିତରେ ଦଗ୍ଧ ହେବାକୁ ଲାଗିଲା ! ସେ ମନେମନେ ପ୍ରତିଜ୍ଞା କଲା ଯେ ଆଉ କେବେହେଲେ ସେ ଏପରି ଘଟିବାକୁ ଦେବନାହିଁ ।

ପୁଷ୍ପର ଏତେ ଲଜ୍ଜାବୋଧ କରିବା ଓ କଥା ନକହିପାରିବାର ପ୍ରଧାନ କାରଣ, ତା' ମନ ବିରୁଦ୍ଧରେ ସେ ଆସିଛି ଓ ସେଥିପାଇଁ ଆତ୍ମହତ୍ୟା କରିବାକୁ ଯାଇ ଅକୃତକାର୍ଯ୍ୟ ହୋଇ ବଞ୍ଚିରହିଛି । ଏହି ବଞ୍ଚିରହିବା ତା' ପକ୍ଷରେ ଘୋର ଲଜ୍ଜାର କାରଣ ହୋଇପଡ଼ିଛି । ଲଜ୍ଜାଟା ତା'ର ଏପରି ସର୍ବତୋମୁଖୀ ହୋଇଯାଇଛି ଯେ ଆଗରେ କାହାଟାକୁ ଦେଖିଲେ ମଧ ସେ ଆହୁରି ଓଢ଼ଣା ଟାଣି ଦେଇଛି । କାରଣ ଏହି ଓଢ଼ଣାଟାକୁ ହିଁ ସେ ତା'ର ବର୍ତ୍ତମାନ ଏକମାତ୍ର ସମ୍ବଳ ଓ ଅନୁଶୋଚନାଜନିତ ମୁଖରୁ ବିକାର ଭାବ ଗୋପନ କରିବାର ପ୍ରାଚୀର ସ୍ୱରୂପ କରି ରଖିଅଛି ।

ସେ ଭାବୁଛି—

ଯେତେବେଳେ ସେ ବଞ୍ଚିଗଲାଣି, ତା'ର ଆଉ କଣ ଆୟତ୍ତ ଅଛି ?

ଶୁଭେନ୍ଦ୍ରର ସତର୍କ ଦୃଷ୍ଟି ନିକଟରେ ସେ ଟିକେ କାନ୍ଦି ତ ପାରୁନାହିଁ । ରାତି ରାତି ଉନ୍ନିଦ୍ର ଓ ଅନଶନ ରହି, ପ୍ରାଣପାତ କରି, ସେ ତାକୁ ପ୍ରାଣ ଦେଇଛି । ତା' ପରି ଜଣେ ସାମାନ୍ୟ ଯୁବତୀ ପାଇଁ ତା'ର କଠୋର ତ୍ୟାଗ, ଅକାତରେ ଅଜସ୍ର ଅର୍ଥବ୍ୟୟ ଦେଖି, ପୁଷ୍ପ ଏତେ ବିସ୍ମିତ ହୋଇପଡ଼ିଛି ଯେ ଶୁଭେନ୍ଦ୍ରକୁ ସେ କ'ଣ ବୋଲି ଭାବିବ— କିଛି ଠିକ୍ କରିପାରୁନାହିଁ । ଜଣେ—ସେ ପିତା, ମାତା, ଭାଇ ଭଗ୍ନୀ କିମ୍ବା ସ୍ୱାମୀ, ସ୍ତ୍ରୀ ଯେ ହେଉ—ଏତେ ଯେ ତ୍ୟାଗ କରିପାରେ, ଏତେ ଗଭୀର ସ୍ନେହ କରିପାରେ, ଜୀବନରେ ତ ସେ କେବେ ଦେଖିନାହିଁ, କଳ୍ପନା ବି କରିନାହିଁ । ଏହି କଥା ଭାବି ତା'ର ହୃଦୟ ସ୍ୱତଃ ଶୁଭେନ୍ଦ୍ର ପତି କୃତଜ୍ଞତାରେ ପୂର୍ଣ୍ଣ ହୋଇଉଠିଛି । ସେଥିପାଇଁ ତା'ର ସଂକୋଚ ଭାବ କ୍ରମେ ଦୂରହୋଇଯାଇଥିଲେ ମଧ୍ୟ ଗତ ଘଟଣାବଳୀର ଲଜ୍ଜାକର ସ୍ମୃତି କୌଣସି କଥା କହିବାକୁ ତା'ର କଣ୍ଠରୁଦ୍ଧ କରିଦେଉଛି । ସେ ଶୁଭେନ୍ଦ୍ରକୁ କୌଣସି କଥା କହିପାରୁନାହିଁ ।

## ଛଅ

ପୁଣି ଚାରିମାସ ପରେ—

ସେତେବେଳକୁ ଶୁଭେନ୍ଦ୍ରର ସ୍ୱଗ୍ରାମରେ ଗ୍ରାମ୍ୟଲୋକଙ୍କର କଥା ସଂପ୍ରସାରଣ କରିବାର ଅଦ୍‌ଭୁତ କ୍ଷମତା ହେତୁ, କଥାଟା କେତେ ଭାବରେ ପ୍ରଚାରିତ ହୋଇଯାଇଛି ।

ଶୁଭେନ୍ଦ୍ରର ପିଉସୀ ଏହି ଭାବରେ ଶୁଣିଥିଲେ ଯେ ଶୁଭେନ୍ଦ୍ର ଗୋଟିଏ ଅଜଣା ଅଶୁଣା, କୁଳସମ୍ମାନବିହୀନା ଅପସରୀ ପରି ସୁନ୍ଦରୀ ଯୁବତୀଟିକୁ ବିବାହ କରିଛି । କାଳେ ସେମାନେ ଏଥିରେ କିଛି ବିଘ୍ନ ଘଟାଇପାରନ୍ତି, ସେଥିପାଇଁ ସେମାନଙ୍କୁ ଏ ବିଷୟ ଜଣାଇନାହିଁ । ଆଉ ସେ ଯେତେବେଳେ ନିଜେ ସ୍ୱାଧୀନ, ସେ ଅନ୍ୟର ପରାମର୍ଶ ସେଥିପାଇଁ ଗ୍ରହଣ କରିଥାନ୍ତା ବା କାହିଁକି ? ଇତ୍ୟାଦି ।

ଏଥିପାଇଁ ଶୁଭେନ୍ଦ୍ରର ସାନଭଉଣୀ ଯେତେବେଳେ ତା ନିକଟକୁ ଆସିବାକୁ ଜିଦ୍ କଲା, ସେ ତାକୁ ଶୁଭେନ୍ଦ୍ର ନିକଟକୁ ପଠାଇଦେଲାବେଳେ, ରାଗ ଆଉ ଅଭିମାନରେ କହିଲେ—

"ଯା, ତୋ'ର ସୁନ୍ଦରୀ ନୂଆବୋଉର ହାତପରଶା ଖାଇବୁ, ମୋ' ହାତରୁ ତତେ ଆଉ ରୁଚିବ ନାହିଁ ।"

ପୁଷ୍ପର ବହୁତ ପରିବର୍ତ୍ତନ ହୋଇଯାଇଛି ।

ଶୁଭେନ୍ଦ୍ରର ଶୟନ କୋଠରିଟି ହୋଇଛି ତା'ର ଶୟନକକ୍ଷ । ଦିନେ ସେହି କୋଠରିଟିର ଚଟାଣ ଉପରେ ପଡିଥିବା ସୁନ୍ଦର ଗାଲିଚା ଉପରେ ବସି ଶୁଭେନ୍ଦ୍ରର ଉଠାଇଥିବା ଫଟୋର ଖଣ୍ଡିଏ ଆଲବମ୍ ଖୋଲାଇ ଦେଖୁଛି, ତାକୁ ତଳ ଅଗଣାରୁ ଶୁଭିଲା, କିଏ ହଂସରାଳୀ-ସ୍ୱରଜିଣା ବାଳିକା କଣ୍ଠରେ ପଚାରୁଛି–

"ପାରିଆ, ନୂଆବୋଉ କେଉଁଘରେ ?"

ସ୍ୱର ଶୁଣି ପୁଷ୍ପର ମନ ଚଞ୍ଚଳ ହୋଇଉଠିଲା । ନିକଟରେ ବିକାଶୋନ୍ମୁଖ ଗୋଲାପ କଢ଼ଟି ପରି, ଗ୍ରୀବା ବକ୍ର କରି, ତା' ଆଡ଼କୁ ତୀକ୍ଷ୍ଣ ଉଜ୍ୱଳ ଆଖିରେ ଚାହିଁ ରହିଛି ।

ପୁଷ୍ପ ମନେମନେ ଚିହ୍ନିଲା ଇଏ କିଏ ବୋଲି ।

ଦୁହିଁଙ୍କର ଆଖି ମିଳିତ ହେଲାକ୍ଷଣି, ବାଳିକାଟି ଝଡବେଗରେ ଦୌଡି ଆସି ପୁଷ୍ପର ବେକକୁ ଜୋର୍‌ରେ କୁଣ୍ଢାଇ ଧରି ମୁହଁରେ ମୁହଁ ଲଗାଇଦେଇ ଅତି ଆବେଗର ସ୍ୱରରେ କହିଲା–

"ନୂଆବୋଉ ! ତମେ ମୋ' ନୂଆବୋଉ ?"

ବାଳିକାର ଅନ୍ତରଙ୍ଗତାରେ ପୁଷ୍ପ ବିଚଳିତ ହୋଇଉଠିଲା । ତା'ର ହୃଦୟର ସ୍ନେହ ଯେପରି ମୁକ୍ତ ହୋଇ, ତା'ର ଦେହସାରା ପୁଲକ ଛନ୍ଦରେ ଉଚ୍ଛୃଙ୍ଖଳ ଭାବରେ ଆତ୍ମପ୍ରକାଶ କଲା । ସେ ଆନନ୍ଦରେ ଆତ୍ମବିସ୍ମୃତ ହୋଇ ନିଜର ବାହୁପାଶରେ ବାଳିକାର ନବନୀତ କୋମଳ ଅଙ୍ଗଟିକୁ ବେଷ୍ଟନ କରି ସସ୍ନେହରେ ଗୋଟିଏ ଚୁମ୍ବନ ଦେଲା । ବାଳିକାଟି ମୁଖ ଉତ୍ତୋଳନ କରି, ଗଭୀର ମମତାର ସହିତ ପୁଷ୍ପ ମୁହଁକୁ ଚାହିଁଲା । ଉଭୟଙ୍କର ମୁହଁରେ ମିଳନର ଆନନ୍ଦ-ଛନ୍ଦ ଫୁଟିଉଠିଲା ।

ବାଳିକାଟି ବିହ୍ୱଳ କଣ୍ଠରେ ଡାକିଲା–

"ନୂଆବୋଉ !"

ଜର୍ଜରିତ ସ୍ନେହରେ ପୁଷ୍ପର ଅଧର ଯୁଗଳ ଥରିଉଠିଲା । ସେ ବାଳିକାର ମୁହଁର ଖୁବ୍ ନିକଟକୁ ମୁହଁ ନେଇ, କମ୍ପିତ ଅଧରକୁ କିଞ୍ଚିତ ଆଗକୁ ପ୍ରସାରଣ କଲା ।

ବାଳିକାଟି ସେହି ଓଷ୍ଠ ଯୁଗଳର ଇଙ୍ଗିତରୁ, 'କ'ଣ' ବୋଲି ଉତ୍ତର ପାଇ ଆନନ୍ଦରେ ପୁଣି ତା' ବେକକୁ ଜାକିଧରିଲା ।

ଶୁଭେନ୍ଦ୍ର ଗୃହଭିତରକୁ ପାଦ ପକାଇବାକୁ ଉଦ୍ୟତ ହେବା ଅବସ୍ଥାରେ, ଏ ଉଭୟ ବିପରୀତ ଜଳ ଆଉ ସ୍ଥଳର ଶ୍ରେଷ୍ଠ ସୃଜନ ।

ସେ ଆଲବମ୍‌ଟି ଥୋଇଦେଇ ଉଠିବାକୁ ଉଦ୍ୟତ ହେଲାବେଳେ ଦେଖିଲା, ଗୋଟିଏ ଆଠ ନ' ବର୍ଷର ବାଳିକା । ଦ୍ୱାରବନ୍ଧ ସୁମନ ଦୁଇଟିର ମିଳନ ଦେଖି

ମୁହୂର୍ତ୍ତେ ମୁଗ୍ଧ ହୋଇ ଛିଡ଼ାହୋଇ ରହିଲା । ପରେ ଉଦ୍‌ବେଗର ସହିତ ଗୃହ ମଧ୍ୟରେ ପ୍ରବେଶ କରି, ଆନନ୍ଦରେ ଅଧୀର ହୋଇ ଉଚ୍ଛନ୍ନ ସ୍ୱରରେ ଡାକିଲା–

"ମିନି, ମିନି !"

ପୁଷ୍ପକୁ ଛାଡିଦେଇ ହଠାତ୍ ମିନି ଦୌଡ଼ିଆସି ଶୁଭେନ୍ଦୁକୁ କୁଣ୍ଢାଇପକାଇଲା । ଶୁଭେନ୍ଦୁ ତାକୁ କାଖ ଉପରକୁ ଉଠାଇନେଇ, ତା' ଆସିବା କଥା, ଘରକଥା ଇତ୍ୟାଦି କେତେକଥା ପଚାରିଲା ।

ମିନି କୌଣସି କଥାରେ ଉତ୍ତର ନ ଦେଇ ପୁଷ୍ପକୁ ଉଦ୍ଦେଶ୍ୟ କରି ତାକୁ ପଚାରିଲା–

"ନନା ! ସେ କିଏ କି ?"

ଶୁଭେନ୍ଦୁ ସସ୍ନେହରେ ତା' ଗଣ୍ଡରେ ଗୋଟିଏ ଛୋଟ ଚପେଟାଘାତ କରି କହିଲା–

ତୁ ପଚାରୁନୁ, ମୁଁ ଜାଣିନାହିଁ ।

ମିନି ହସିହସି ମୁଣ୍ଡ ହଲାଇ ହଲାଇ କହିଲା–

"ହଁ, ନ କୁହ, ମୁଁ ଜାଣିଚି ଯେ ।"

ଶୁଭେନ୍ଦୁ କାଖରୁ ଓହ୍ଲାଇଆସି, ପୁଷ୍ପକୁ ସେହିପରି କୁଣ୍ଢାଇଧରି ପଚାରିଲା–

"ନୂଆବୋଉ ! ସେ କିଏ କି ?"

ମିନି ପୁଷ୍ପ ନିକଟକୁ ଆସିଲା ବେଳକୁ ଶୁଭେନ୍ଦୁ ଚାଲିଯାଇଥିଲା ।

ପୁଷ୍ପ ଧୀରେ ଅସ୍ପଷ୍ଟ ସ୍ୱରରେ ଉତ୍ତର ଦେଲା–

"ତମ ବର ।"

ମିନି ସେହିପରି ଭାବରେ ମୁଣ୍ଡ ହଲାଇ ହଲାଇ କହିଲା–

ହଁ, ନକୁହ, ମୁଁ ଜାଣିଛି ଯେ ।

ଏହି ଦିନଠାରୁ ପୁଷ୍ପ ମନରେ ଥିବା ସନ୍ଦେହର ଦାଗ ପର୍ଯ୍ୟନ୍ତ ଲିଭିଯାଇ ଶୁଭେନ୍ଦୁ ପ୍ରତି ପତ୍ନୀ ଭାବରେ ତା ମନ ଅଧିକତର ଆକୃଷ୍ଟ ହୋଇଉଠିଲା । ତାର ଯାହା ଆଡ଼ଆଡ଼ ଭାବ ଟିକେ ଥିଲା, ତାହା ମଧ୍ୟ ଦୂରହୋଇଗଲା ।

ଏବେ ସେ ପ୍ରାୟ ସର୍ବଦା ଶୁଭେନ୍ଦୁ କଥା ଭାବେ । ସେ ଯେ ହେଉ, ତା' ସ୍ୱାମୀ ହେଉ ବା ଅନ୍ୟ କେହି ହେଉ, ସେ ଯେ ଏଡ଼େ ବଡ଼ ଉଚ୍ଚମନା ମହତ ଲୋକ, ପୁଷ୍ପର କଳ୍ପନାର ଊର୍ଦ୍ଧ୍ୱରେ—ଏଥିରେ ସନ୍ଦେହ ନାହିଁ ।

ସେ ତା'ର ପିତାର ଜାତି, କୁଳ, ଗୋତ୍ର ଆଉ ଅବସ୍ଥାର ଅନୁରୂପ–ଯେତିକି ଭାବିବା ସ୍ୱାଭାବିକ, ତା' ଛଡା କେବେହେଲେ କଳ୍ପନା କରି ନ ଥିଲା, ତା' ଭାଗ୍ୟରେ ଏପରି ଏକ ମହାନୁଭବ, ଧନୀ ଆଉ ସୁନ୍ଦର ଯୁବକସ୍ୱାମୀ ଆଉ ଏତେ ସୁଖସୌଭାଗ୍ୟ ଅଛି ବୋଲି । ସେ ଯେବେ ଆଗରୁ ଜାଣିଥାନ୍ତା, ତା' ହେଲେ କେବେହେଁ ବିଷ ଖାଇନଥାନ୍ତା । ଏହିପରି ଭାବିଲାବେଳେ ତା'ର ମନେପଡ଼େ, ଜଣେ କିଏ ସନ୍ନ୍ୟାସୀ ଶ୍ରେଣୀର୍ ଲୋକ ଦିନେ ତା'ର ହାତ ଦେଖି ତା' ବାବାକୁ କହିଥିଲେ, 'ଆରେ ତୋ' ଝିଅ ରାଣୀ ହେବରେ' । ସେଥିପାଇଁ ତା'ର ସାଙ୍ଗସାଥୀମାନେ ତାକୁ ପରିହାସ କରି 'ରାଣୀ' ବୋଲି ଡାକୁଥିଲେ; କିନ୍ତୁ ତା'ର କପାଳ... ଆଉ ବେଶି ସେ ଭାବିପାରେ ନାହିଁ। ମନେମନେ ମସ୍ତକ ତା'ର ଅବନତ କରେ ସେହି ଭବିଷ୍ୟଦ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ।

ଦୁଃଖ ପରେ ସୁଖ ଭିତରେ ଯେଉଁ ଦୁଃଖର ସ୍ମୃତି, ତାହା ମନୁଷ୍ୟର ଘୋର ଅସହ୍ୟ ହେଲେହେଁ ଭାବିହୋଇଯାଏ । ଯେତେ ତାକୁ ଦୂରକୁ ଠେଲିଦେଲେ ମଧ୍ୟ ସମୁଦ୍ରର ଆଭ୍ୟନ୍ତରୀଣ ସ୍ରୋତ ପରି ବାରବାର ତାହା ମନ ଭିତରକୁ ଆସି ଜୋର୍ କରି ସେହିଆଡ଼େ ଭସାଇ ନେଇଯାଏ । ନ ଭାବି ରହିହୁଏ ନାହିଁ ।

ଏହି ସୁଖଶାନ୍ତି ଭିତରେ ମଧ୍ୟ ବେଳେବେଳେ ପୁଷ୍ପର ଗତ ଜୀବନର ଦୁଃଖ କଷ୍ଟ ଛାୟାବାଜି ପରି ତା'ର ମାନସପଟରେ ଭାସି ଖେଳିଯାଏ । ସେ ଅନ୍ତରେ ଅନ୍ତରେ ଶିହରିଉଠେ। ଆଖି ବୁଜିଦେଇ ଭଗବାନଙ୍କୁ ଡାକେ–ହେ ଭଗବାନ, ତୁମେ ସହାୟ ହୁଅ । ସୁଖ ଦେଇ ପୁଣି କାହିଁକି ସେ ଦୁଃଖ କଥା ମନରେ ଦେଉଛ ? ମୋତେ ଭୁଲାଇଦିଅ, ମୋ' ମନରୁ ତାହା ଲିଭିଯାଉ । ଭାବୁଭାବୁ ତା' ମନ କ'ଣ ହୋଇଯାଏ, ତା' ଆଖି ଛଳଛଳ ହୋଇଆସେ ।

ଦିନେ ଏହିପରି ସମୟରେ ମିନି ପହଞ୍ଚି କହିଲା–

ଦେଖ ଦେଖ, ନୂଆବୋଉଙ୍କ ଆଖିରେ ଲୁହ କେମିତି ଟଳଟଳ ହେଉଛି । ତମେ କାନ୍ଦୁଚ କାହିଁକି ନୂଆବୋଉ ! ନନାଙ୍କୁ କହିଦେବି ।

ପୁଷ୍ପ ପତନୋଦ୍ୟତ ଅଶ୍ରୁବିନ୍ଦୁ ତତ୍‌କ୍ଷଣାତ୍ ମୁଞ୍ଚନ କରି, ମିନିକୁ କୋଳକୁ ଟାଣିଆଣି, ତା ମୁହଁରେ ହାତ ବୁଲାଇ ବାଷ୍ପଜଡିତ ସ୍ନେହାର୍ଦ୍ର କଣ୍ଠରେ କହିଲା–

"ମୁଁ କାହିଁକି କାନ୍ଦିବି, ତମ ପରି ଭଉଣୀ ଯା'ର ଅଛି..."

ମିନି କଥା ନସରୁଣୁ କହିଉଠିଲା–

"ଆଚ୍ଛା, ନୂଆବୋଉ, ମୁଁ କ'ଣ ତମ ଭଉଣୀ ? ମୁଁ ତ ନନାଙ୍କ..."

ପୁଷ୍ପ ତାକୁ କିଛି ବୁଝାଇଦେଇନପାରି କେବଳ କହିଲା–

ନନାଙ୍କର ଯିଏ ଯା', ହବ, ମୋର ବି ସିଏ ତା' ହବ ।

ମିନି ଚଞ୍ଚଳ କଥାଟା ଧରିନେଇ କହିଉଠିଲା–

ଆଚ୍ଛା, ନନାଙ୍କର ତ ତମେ ନୂଆବୋଉ, ତେବେ ତେମେ କ'ଣ ତମର ନୂଆବୋଉ ?

ପୁଷ୍ପ ମିନିର ଏ ଚାପଲ୍ୟରେ ହସିଉଠି, ନିଜର ମୁହଁ ନିକଟକୁ ତା' ମୁହଁକୁ ଆଣି, ସ୍ନେହର ସହିତ ତା' ଦୁଇ ଗାଲକୁ ଚିପିଧରି କହିଲା–

ନାଇଁ ନାଇଁ, ନିଜେ କେମିତି ନିଜର ହେବି ? ତେମେ ମୋ' ନୂଆବୋଉ !

ମିନି କ'ଣ ବୁଝି, ନାଇଁନାଇଁ କରି ତା' ନିକଟରୁ ପଳାଇ ଯିବାକୁ ଉଦ୍ୟତ ହେଲା । ପୁଷ୍ପ ହସିହସି ହଁ ହଁ କହି, ତାକୁ କୁଣ୍ଢାଇ ଛାତିରେ ଭିଡିଧରିଲା ।

ମିନି ଛାଟିପିଟି ହେଉହେଉ କହିଲା–

"ଆସ ନୂଆବୋଉ, ହାରମାନିଆ ବଜେଇବା । ତମ ପେଇଁ, ଆଜି ଗୋଟାଏ ନୂଆ ହାରମାନିଆ ଆସିଚି ।"

ଏହା କହି ସେ ପୁଷ୍ପର କାନି ଧରି ତାକୁ ହଲ୍ ଭିତରକୁ ଟାଣି ଘେନିଗଲା ।

ମିନି ଶୁଭେନ୍ଦ୍ରକୁ କହି ଘରେ ଥିବା ହାରମୋନିୟମ୍‌ଟି ମଗାଇଦେଇଛି । ବାକ୍ସରୁ ଖୋଲି ଟେବୁଲ ଉପରେ ରଖି ପୁଷ୍ପକୁ କହିଲା–

ନିଅ ନୂଆବୋଉ, ଏ ହାରମାନିଆଟା ତମର ।

କହିସାରି ପୁଷ୍ପ ମୁହଁକୁ ଅନାଇଲା । କ'ଣ ବୁଝି କହିଲା–

"ଏଇଟା ପୁରୁଣା ଦିଶୁଛି ? କ'ଣ କଉଚ ମ ?"

ପୁଷ୍ପ ହାସ୍ୟବେଗ ସଙ୍କୁଚିତ କରି କେବଳ ଅଳ୍ପ କଣ୍ଠକୁ ଫଟେଇ ହସିଦେଲା ।

ମିନି ଈଷତ୍ ରାଗିଯାଇ ବେଶି ଅଭିଜ୍ଞତା ଥିଲାଭଳି କହିଲା–

"ଏଇଟା, ଏଇଟା ଅପେକ୍ଷା ଖୁବ୍ ଭଲ, ତମେ କ'ଣ ଜାଣିବ ?"

ମିନିର କଥା କହିବାର ଢଙ୍ଗ ଦେଖି ପୁଷ୍ପ ନ ହସି ରହିପାରିଲା ନାହିଁ ।

ମିନି ନିକିତି କଣ୍ଟାକୁ ଚାହିଁଲାଭଳି ମୁହୂର୍ତ୍ତେ ଦୁଇ ହାରମୋନିୟମକୁ ଅନାଇ, କ'ଣ ଭାବି କହିଲା–

"ଆଚ୍ଛା ହଉ, ତା' ହେଲେ ଏଇଟା ତମର, ଏଇଟା ମୋର ।"

କହି, ପୁରୁଣା ହାରମୋନିୟମ୍‌ଟି ଉପରେ ଆଦର କରି ହାତ ବୁଲାଇନେଲା । ନିଜର କ୍ଷୁଣ୍ଣତାକୁ ଲୁଚାଇବା ପାଇଁ ବସିପଡି ଦୁଇ ତିନିଟା ପରଦାକୁ ଆଙ୍ଗୁଳି ଅଗରେ ଚାପିଧରିବାରୁ ପରଦାଗୁଡ଼ିକ ଯେପରି ଅନିଚ୍ଛାରେ ମିନିର ମନୋଭାବକୁ ସମର୍ଥନ କରି ଭେଁ ଭେଁ ସ୍ୱରରେ ଚିତ୍କାର କରିଉଠିଲେ । ମିନି ହାତ ଛାଡି ଦେଇ ହାରମୋନିୟମ ଉପରେ ଦୃଷ୍ଟି ରଖି କିଞ୍ଚିତ୍ ଦମିତ ଗମ୍ଭୀର କଣ୍ଠରେ ବେକକୁ ହଲାଇ ହଲାଇ କହିଲା–

"ଘରେ ତ ମୁଁ ବରାବର ଏଇଟାକୁ ବଜାଏ ।"

ମିନି ଏପରି ଅନାସକ୍ତ ଭାବରେ କଥାଟାକୁ କହିଲା, ସତେ ଯେପରି ଅନ୍ୟ ହାରମୋନିୟମଟିରେ ତା'ର ଦାବି ନାହିଁ ।

ପୁଷ୍ପ ମିନିର ମନୋଭାବ ବୁଝିପାରି ତା' ମୁହଁକୁ ବୁଲାଇ ଧରି, ଓଠକୁ ହଲାଇ ଦେଇ କହିଲା–

"ମୋ' ସୁନା ଭଉଣୀଟି ପରା, ତମେ ତାକୁ ବଜା । ମୁଁ ତ କିଛି ଜାଣିନାହିଁ, କଣ ବଜେଇବି ।"

ମିନି ଉଦ୍‌ବେଗର ସହିତ କହିଉଠିଲା–

ହଁ, ତମେ ବଜେଇ ଜାଣନା ନା ! ସେଦିନ କେମିତି ମନକୁ ମନକୁ ଗୋଟାଏ ସୁର ପକାଇଦେଲ ! କ'ଣ.ତ, ଓ ଓ ! ହଁ...

'ମନସିଜ ମନମୋହନ ଘନ ଶ୍ୟାମସୁନ୍ଦରରେ, ସଜନି ।'

ମିନି ସୁର୍‌ଧରି ମନେପକାଇ ଦେଇ କହିଲା–

"ନନା କହୁଥିଲେ, ଖୁବ୍ ଭଲ ଶୁଭୁଥିଲା ବୋଲି । ଆଚ୍ଛା, ନୂଆବୋଉ ! ତମକୁ ସେ ଗୀତ ସବୁଯାକ ଆସେ ? ନନା ପଚାରୁଥିଲେ ।"

ପୁଷ୍ପ ଜିଭ କାମୁଡିପକାଇ ଦୁଇ ପାପୁଲିରେ ମୁହଁ ଲୁଚାଇବାକୁ ଚେଷ୍ଟା କରୁକରୁ କହିଲା–

"ମିଛ କଥା, ନନା କଣ ଥିଲେ କି ! କୁଆଡ଼େ ଯାଇଥିଲେ ପରା..."

ମିନି ତା'ର ଛୋଟ ଓଷ୍ଠଯୁଗଳ ଲମ୍ବମାନ କରି କହିଲା–

"ଆ-ଆ-ଆଉ ଭାରି ସତେଇ । ସେ ଘରେ ଶୋଇକରି କ'ଣ ପଢୁଥିଲେ, ମୁଁ ଗଲାଠୁ ପଚାରିଲେ ।"

ମିନିର ମୁଖଭଙ୍ଗୀ ଦେଖି ପୁଷ୍ପ ସ୍ନେହାବେଗରେ ତାକୁ କୋଳକୁ ଟାଣିଆଣି ତା' ମୁହଁ ଉପରେ ନିଜର ମୁହଁ ବୁଲାଇନେଲା ।

ମିନି ପରି ଛୋଟ ନଣନ୍ଦ ନିକଟରେ ନୂଆବୋଉ ଯେ କେତେ ବଡ଼ ପଦାର୍ଥ, ତାହା କେବଳ ସେହି ମିନି ଭଳି ନଣନ୍ଦମାନେ ହିଁ ବୁଝିବେ । ବଡ଼ବଡ଼ କୁଟିଳା, ଜଟିଳାମାନେ ସେଥିରୁ କିଛି ପାଇବେ ନାହିଁ ।

ମିନି ତା' ନୂଆବୋଉକୁ ପାଇ ତାହାରି ଭିତରେ ବିଭୋଳ ଥିଲା । ତା'ର ସୁନାରୁପା କଥା ଭାବିବାକୁ ଅବସର ନଥିଲା । ଦିନେ ଦୁହେଁ ବସି ଫୁଲ ଗୁନ୍ଥୁଥିଲା ବେଳେ, ମିନି ପୁଷ୍ପ ହାତକୁ ଲକ୍ଷ୍ୟ କରି କହିଲା–

"ନୂଆବୋଉ, ତମେ ଏ ଖାଲି କାଚଚୁଡ଼ି ନାଇଚ କାହିଁକି ?"

ଫୁଲ ଗୁନ୍ଥୁଗୁନ୍ଥୁ ବୁଝିପାରି ପୁଷ୍ପ କହିଲା–

"ସେମିତି, ଖୁସିରେ ।"

ମିନି ହାତକୁ ଅବଲୟ କରି କହିଲା– "ଖୁସିରେ ନା ଇଏ ଗୋଟାଏ ଫେସନ ?"

ପୁଷ୍ପ ଜାଣିଛି ଯେ ଚିକିତ୍ସାର ସୁବିଧା ପାଇଁ ତା' ଗହଣାଗୁଡିକ ତା' ଦେହରୁ କାଢ଼ି ରଖାଯାଇଛି । ଏପର୍ଯ୍ୟନ୍ତ କାହିଁକି ଯେ ତାକୁ ଗହଣା ପିନ୍ଧିବାକୁ ଦିଆଯାଇନାହିଁ ସେ ନିଜେ ମଧ କିଛି ବୁଝିନାହିଁ । ସେଥିପାଇଁ କଥାଟାକୁ ଚାପିଦେବାକୁ ପରିହାସରେ ଟିକେ ମିନିର ନାକଟିକୁ ଟାଣିଦେଇ ଗୋଟିଏ ଫୁଲ ମିନିକୁ ଦେଖାଇ କହିଲା– "ଦେଖ, ଏ ଫୁଲଟି ଯେମିତି ତମ ମୁହଁଟି ଠିକ୍ ସେମିତି ।"

ମିନି ଟିକେ ଦୁଃଖିତ ହୋଇ ଗଣ୍ଡକୁ ବେକରେ ଜାକି ମୁଣ୍ଡକୁ ଏପାଖସେପାଖ କରି ଓଠକୁ ଲମ୍ବାଇ କହିଲା–

"ଆ–ଆ–ଆଉ ମୋ ମୁହଁ କୁଆଡ଼େ ଏମିତି ହୋଇଥବ ! ଆଚ୍ଛା ରହିଲ, ଦେଖିବା ଭଲା, ମୋ ମୁହଁ କୁଆଡ଼େ..."

କହୁକହୁ ମିନି ଫୁଲଟିକୁ ହାତରେ ଧରି, ହଲ୍‌ରେ ଅଧ୍ୟୟନରତ ଶୁଭେନ୍ଦୁ ନିକଟକୁ ଦୌଡିଆସି ପଚାରିଲା–

"ଆଚ୍ଛା କହିଲ ନନା ! ମୋ' ମୁହଁ କୁଆଡ଼େ ଏଇ ଗୋଲାପଫୁଲଟା ପରି ଏମିତି ପାଖୁଡ଼ାପାଖୁଡା ହୋଇଚି ?"

କଥାଟା ଶୁଭେନ୍ଦୁ ବୁଝିପାରିଲା । ହସିହସି ଆଦରରେ ମିନିର ମୁହଁଟିକୁ ଧରି ନିରୀକ୍ଷଣ କରି କହିଲା–

"ବାଃ ଠିକ ତ ।"

ଶୁଭେନ୍ଦ୍ରର କଥାରେ ମିନି ଈଷତ୍ ତାଚ୍ଛଲ୍ୟ ଭାବ ପ୍ରକାଶ କରି, ମୁହଁ ହଲାଇ ହଲାଇ କହିଲା–

"ଆ-ଆ-ଆ-ଉ, କେମିତିନା ବାଃ, ଠିକ୍ ତ ?"

ଅଙ୍ଗୁଳିରେ ଦେଖାଇଦେଇ ଶୁଭେନ୍ଦ୍ର କହିଲା–

"ଏଇ ତୋ' ଆଖିପତା, ଭ୍ରୂଲତା, ନାକପୁଡ଼ିଆ, ଏଇ ତୋ' ଥଣ୍ଡ" କହି ଶୁଭେନ୍ଦ୍ର ମିନିର ନିମ୍ନୋଷ୍ଠକୁ ଦୁଇ ଅଙ୍ଗୁଳିରେ ଚିପିଦେଲା ।

ମିନି ତା'ର ସ୍ୱରରେ ହସିଉଠି କହିଲା–

"ମୁଁ କ'ଣ ଚଢ଼େଇ ଯେ ମୋର ଥଣ୍ଡ ?"

ଶୁଭେନ୍ଦ୍ର ସ୍ଫୂର୍ତ୍ତିର ସହିତ କହିଲା–

"ଆଚ୍ଛା ଆଚ୍ଛା, ଥଣ୍ଡ ନୁହେଁ, ଅଧର ଦୁଇଟି ଆଉ ତୋ ଚିବୁକଟି, ତୋ ଗଣ୍ଡ ଦୁଇଟି, ତୋ' କପାଳଟି ଆଉ ତୋ' କାନ ଦୁଇଟି" କହି ଶୁଭେନ୍ଦ୍ର ଈଷତ୍ ମିନିର କାନକୁ ହଲାଇ ଦେଇ କହିଲା–

"ବୁଝିଲୁ ? ଏ ସବୁ ଗୋଟିଏ ଗୋଟିଏ ପାଖୁଡ଼ା । ସବୁଯାକ ମୁହଁଟି ଗୋଟିଏ ଗୋଲାପଫୁଲ ।"

ମିନି କଣ ବୁଝି ପଚାରିଲା–

"ଆଉ ମୋ' ବାଳ ଛାଡ଼ିଗଲ ଯେ..."

ଶୁଭେନ୍ଦ୍ର ହସିଉଠି ମିନି ମୁଣ୍ଡରେ ହାତ ବୁଲାଇଦେଇ କହିଲା–

"ଇଏ ହେଉଛି ଫୁଲର ବୃନ୍ତକୁଣ୍ଡ ।"

ମିନି ପଚାରିଲା–

"ବୃନ୍ତକୁଣ୍ଡ କ'ଣ, ନନା ?"

ଶୁଭେନ୍ଦ୍ର ଫୁଲଟିକୁ ଦେଖାଇ ବୁଝାଇଦେଲା । ବେଣୀଟିକୁ ଧରି ହଲାଇ ଦେଇ କହିଲା–

"ଆଉ ଏଇଟି ଫୁଲର ଡେମ୍ଫ । ବୁଝିଲୁ ?"

ମିନି କଣ ବୁଝି ବେଣୀ ହଲାଇହଲାଇ ଯାଉଯାଉ, ଦ୍ୱାରବନ୍ଧ ନିକଟରୁ ଫେରିଆସି ହଂସ ପରି ଖଣ୍ଡିତ କଣ୍ଠରେ କହିଉଠିଲା–

"ନନା ! ନୂଆବୋଉ ଖାଲି କାଚଗୁଡ଼ା ପିନ୍ଧିଛନ୍ତି, ମୁଁ କହିଲାଠୁ ସେ କହୁଛନ୍ତି– ଏମିତି ଖୁସିରେ । ମୁଁ କହିଲି ଖୁସି ନା ସିଏ ଗୋଟାଏ ଫେସନ୍ ? ଆଚ୍ଛା, ନନା କହିଲ, ମୋ' କଥା ଠିକ୍ ନା ତାଙ୍କ କଥା ଠିକ୍ ?"

ଶୁଭେନ୍ଦୁ ପ୍ରଗଳ୍‌ଭା ଭଗ୍ନୀର କଥାରେ ହସିଉଠିଲା । କହିଲା, "ତୋ' କଥା ଠିକ୍ ।"

ମିନି ମୁଣ୍ଡ ହଲାଇ ହଲାଇ ଆନନ୍ଦରେ ବାୟୁ ବେଗରେ ସେଠାରୁ ଚାଲିଗଲା ।

ପୁଷ୍ପର ସୌନ୍ଦର୍ଯ୍ୟରେ ଏପରି ଗୋଟିଏ ଅପ୍ରକାଶ୍ୟ ମାଦକତା ଅଛି, ଯାହା ଆଖିକୁ ଏବଂ ଅନ୍ତରକୁ କେବଳ ଦୂରକୁ ଦୂରକୁ ଭସାଇନେଇଯାଏ, ପୁଷ୍ପର ଦେହ ଉପରେ ଆବଦ୍ଧ କରି ରଖେନାହିଁ । ସେଥିପାଇଁ ଶୁଭେନ୍ଦୁ ଅଳଙ୍କାରର ଅଭାବ ତା' ଦେହରେ କେବେ ଅନୁଭବ କରିନାହିଁ । ଆଜି ମିନିର କଥାରେ ହଠାତ୍ ତା'ର ସେ ଚକ୍ଷୁ ଖୋଲିଗଲା । ସେ ସଙ୍ଗେସଙ୍ଗେ ଗୋଟିଏ ସେଟ୍ ସୁନ୍ଦର ଗହଣା ପାଇଁ ତାର ଜଣେ ପରିଚିତ ଅଳଙ୍କାରଦୋକାନୀ ନିକଟକୁ ଲେଖିଦେଲା ।

ମିନି ଯାଇ ବିଜୟର ଉତ୍ତେଜିତ କଣ୍ଠରେ କହିଲା ପୁଷ୍ପକୁ–

"ହେଁ–କ'ଣ ହେଲା ? ନନା କହିଲେ, ମୋ' କଥା ଠିକ୍–ସେ ଗୋଟାଏ ଫେସନ ।"

ପୁଷ୍ପ ଫୁଲ ଗୁଚ୍ଛୁଗୁଚ୍ଛୁ ହସି ହସି କହିଲା–

"ହଁ–ନନା ଯେତେବେଳେ ତମର, ତମ କଥା ଠିକ୍ ନ ହେଇ ଆଉ କ'ଣ ମୋର ହବ !"

ଏ କଥାରେ ମିନି ଅପମାନ ବୋଧ କଲାପରି ଈଷତ୍ ଉଷ୍ମ କଣ୍ଠରେ କହିପକାଇଲା

"କାହିଁକି ନନା କାହିଁକି ମୋର ହେବେ, ତମର ହଉନାହାନ୍ତି ।"

ପୁଷ୍ପ ସହାସ୍ୟ କୌତୁକରେ କହିଲା–

"ହଁ, ସେଦିନ ତ ମୁଁ ସେଇଆ କଉଥିଲି, ତମେ ମୋ' ନୂଆବୋଉ, ଆଉ ସିଏ ମୋ' ନନା । ତମେ ଚିଡୁଥିଲ କାହିଁକି ?"

ମିନି ମୁହଁକୁ ଭୁଡୁଙ୍ଗା କରି କହିଲା–

"ଉଁ-ଉଁ, ମୁଁ କାହିଁକି ନୂଆବୋଉ ହେବି ? ତମେ ତ ମୋ' ନୂଆବୋଉ ।"

ପୁଷ୍ପ କହିଲା ସେହିପରି–

"ମୁଁ କ'ଣ ମନା କରୁଛି କି !"

ମିନି ଠିକ୍ ପୁଷ୍ପକୁ ନକଲ କଲା ପରି କହିଲା–"ଉଁ ମୁଁ କ'ଣ ମନା କରୁଛି କି ?"

ଉଚ୍ଛ୍ୱସିତ ଭାବରେ ପୁଷ୍ପ ହସିଉଠି, ହେଇଲୋ ମୋ ନୂଆବୋଉ କହୁକହୁ ମିନିକୁ କୋଳକୁ ଘେନିଆସିଲା ।

ମିନି ଆସିଲାଦିନଠାରୁ ପୁଷ୍ପ ତା' ସହିତ କ୍ରୀଡାକୌତୁକରେ ସମୟ କଟାଇ ଦେଉଛି । ଶୁଭେନ୍ଦୁ ପ୍ରତି ଲକ୍ଷ୍ୟ ରଖି ମଧ ରଖୁନାହିଁ । ପୁଷ୍ପ ମିନିପରି ନଣନ୍ଦଟିଏ ପାଇ ମହାଆନନ୍ଦ, ମିନି ପୁଷ୍ପପରି ନୂଆବୋଉଟିଏ ପାଇ ମହାଆନନ୍ଦ । କେହି କାହାଠାରୁ କୌଣସି ପ୍ରତିଦାନର ଆଶା ରଖନ୍ତି ନାହିଁ । କେବଳ ପରସ୍ପର ସାହଚର୍ଯ୍ୟହିଁ ସେମାନଙ୍କର ବିନିମୟ ହୁଏ । ମିନି ବସି ଲେଖେ, ପଢ଼େ, ପୁଷ୍ପ ବସି ବହି ଖେଳାଏ । ଦିନେ ମିନି ବସି ସ୍ଲେଟ୍‌ରେ ଲେଖୁଲେଖୁ କ'ଣ ଭାବି ପୁଷ୍ପକୁ ପଚାରିଲା—

"ତମେ ନୂଆବୋଉ, ପିଲାଦିନେ ତ ଭାରି ମାଡ଼ ଖାଇଥବ ?"

ମିନିର ଏ କଥା ଶୁଣି ହସିଉଠିଲେହେଁ ହଠାତ୍ ପୁଷ୍ପର ମନେପଡିଲା ତା' ସାବତମା' କଥା, ବିନା ଦୋଷରେ ସେ ତାକୁ କେତେ ପ୍ରହାର କରିଛି; କିନ୍ତୁ ମନ କଥା ମନରେ ରଖି ହସିକରି ପଚାରିଲା—

"କାହିଁକି ମ ?"

ମିନି କହିଲା—

ଆଉ, ତେମେ ପାଠ ପଢ଼ିନା ଯେ ! ଯିଏ ପାଠ ନ ପଢ଼େ, ସେ ତ ନିଶ୍ଚେ ମାଡ଼ଖାଏ । ମେଙ୍କିଦେଇ ବୋଉ ମେଙ୍କିଦେଇକି ମାରେ ଆଉ ଚଞ୍ଚଳାବୋଉ ଚଞ୍ଚଳା ପିଠିରେ ଖାଲି ଗୁମ୍‌ଗୁମ୍ ନଦିପକାଏ !

ପୁଷ୍ପ ତା'ର ଉଦ୍ୟତ ହସକୁ ଜୋର୍‌ରେ ଅଟକାଇ ରଖି ପଚାରିଲା—

"ଆଉ ତମେ ଖାଲି ବାକି ରହିଗଲ, ନୁହେଁ ?"

ମିନି ଅଧର ଦୁଇଟିକୁ ପୁରୋଗତି କରି କହିଲା—

"ମୋର କଣ ବୋଉ ଅଛି କି ମେତେ ମାରିବ? ମୋ' ବୋଉ ତ..." କହି ମିନିର ମୁହଁଟି ଶୁଖିଗଲା ।

ପୁଷ୍ପ ହଠାତ୍ ମିନିକୁ କୋଳକୁ ଟାଣିଆଣି ମମତାବିହ୍ୱଳ ସ୍ୱରରେ କହିଲା—

"ଆଛା, ଆଜିଠୁ ମୁଁ ତୁମକୁ ମାରିବି, ତମେ ପାଠ ନ ପଢ଼ିଲେ ।"

ମିନି ମୁହଁରେ ହାସ୍ୟରେଖା ଦେଖାଗଲା, ସେ କହିଲା—

"ଏଁ, ତମେ କ'ଣ ମୋର ବୋଉ ଯେ ମେତେ ମାରିବ ! ତମେ ତ ନୂଆବୋଉ !"

ହସିହସି କହିଲା ପୁଷ୍ପ—

"ଏଇକ୍ଷଣି ସିନା ନୂଆବୋଉ ଅଛି, ଦିନେ ତ ପୁରୁଣା ହେବି । ପୁରୁଣା ହେଲେ ନୂଆଟା କଟିଯିବ, ଖାଲିହେବି 'ବୋଉ' ।"

ଏହିପରି ଆମୋଦ-ଆହ୍ଲାଦ ଭିତରେ ମିନି ଆଉ ପୁଷ୍ପର ସମୟ କେଉଁବାଟେ ଚାଲିଯାଏ, କେହି ଜାଣନ୍ତି ନାହିଁ ।

ମିନି ପଢ଼ିଲା ବେଳେ ଦିନେ ପୁଷ୍ପ ବସି ବହି ଖେଳାଉଥିଲା, ମିନି ଦେଖି କହିଲା—

"ପଢ଼ି ତ ଆସେ ନାଇଁ, ଖାଲି ବହି ଖେଳାଇଲେ କଅଣ ହବ ?"

ପୁଷ୍ପ ମୃଦୁ ମୃଦୁ ହସୁହସୁ ପରିହାସ ସ୍ୱରରେ କହିଲା—

"ତମେ ପଢ଼ ଯେ ବରକୁ ପଢ଼ି ଶୁଣାଇବ ।"

ନାଇଁ ନୂଆବୋଉ, ସତେ ପଢ଼ିବ ଆସ, ମୁଁ ପଢ଼େଇ ଦେବି ।

"କ'ଣ ପଢ଼େଇବ ? ମୁଁ ଏକା ସେ ଅ, ଆ, କ, ଖ ଗୁଡାକ ପଢ଼ିବି ନାହିଁ । ମୁଁ କ'ଣ ତମରି ପରି ପିଲା ହୋଇଛି ଯେ ଠ, ଠ ମଡେଇବି !"

ମିନି ଫାଷ୍ଟ୍‌ବୁକ୍ ଖଣ୍ଡକ ପୁଷ୍ପ ଆଗରେ ଧରି ଉତ୍ସୁକ ହୋଇ କହିଲା—

"ଆଚ୍ଛା, ତମେ ଏ ଫାଷ୍ଟବୁକ୍‌ଟା ପଢ଼ ! କହିଲ, ଏ, ବି ।"

ହସି ଦେଇ ପୁଷ୍ପ କହିଲା—

"ଏ, ବି ।"

ମିନି ପୁଣି ହସି ହସି କହିଲା—

"କହିଲ, ସି ।"

ପୁଷ୍ପ ସେହିପରି ଭାବରେ କହିଲା—

"କାହିଁ, ଦେଖା !"

ମିନି ଅକ୍ଷରଟି ଉପରେ ଅଙ୍ଗୁଳି ଦେଇ ଦେଖାଇଦେଲା ।

ପୁଷ୍ପ ଅକ୍ଷରଟିକୁ ଦେଖି ପରିହାସ କରି କହିଲା—

"ଏ ଅକ୍ଷରଟା ଫାସିଆପରି ହେଇଚି । ଆକୁ 'ସି' ନ କହି ଫାସିଆ ବୋଲି କହିଲେ ତ ହବ ?"

ମିନି ଟିକେ ଉତ୍ତେଜିତ ହେଲାପରି କହିଲା–

"ସତେରେ ନୂଆବୋଉ, ଏ ଇଙ୍ଗ୍‌ଲିସ ଅକ୍ଷରଗୁଡ଼ା କେତେ ରକମର, ପଢ଼ିବ ଗୋଟା ରକମର, ଲେଖିବ ଗୋଟା ରକମର, ପୁଣି ଗୋଟା ଧାଡ଼ି ମୂଳରେ ଲେଖିବ ବଡ଼ ବଡ଼ କରି, ଭାରି କଷ୍ଟ । ଆମ ଓଡ଼ିଆ ଅକ୍ଷର ଭାରି ଭଲ । ବଡ଼ ସାନ ନାହିଁ, ଗୋଟାଏ ରକମର । ଏକାଥରେ ପଢ଼ିଯିବ । ତମେ ଆଗେ ଓଡ଼ିଆ ପଢ଼, ସହଜ ହେବ । ନୁହେଁ ?"

ଏହା କହି ମିନି ତା' ଇଂରେଜୀ ହସ୍ତାକ୍ଷର ଖାତାଟି ବାହାର କରି ଦେଖାଇ କହିଲା–

"ହେଇ ଦେଖ ନା, ଏ ବଡ଼ ଛଟା ଅକ୍ଷରଗୁଡ଼ାକ କେଡ଼େ କଷ୍ଟ !''

ଖାତାଟି ଧରି ମିନି ଲେଖିବାକୁ ଲାଗିଲା । ତା' ଅକ୍ଷରଗୁଡ଼ିକ ଏଡ଼େ ବେମାପ ହୋଇପଡୁଥାଏ ଯେ ପୁଷ୍ପ ଦେଖି ହସିଦେଲା ।

ମିନି ଟିକେ ଅପମାନିତ ହେଲାପରି ପୁଷ୍ପକୁ ଚାହିଁ ଅଭିମାନ ସ୍ୱରରେ କହିଲା–

"ଆଚ୍ଛା, ହସୁଚ ! ଲେଖିଲ ଭଲା ଏମିତି ଗୋଟାଏ ଅକ୍ଷର, ଦେଖିବା ।''

ପୁଷ୍ପ ମିନିର କାର୍ଯ୍ୟକଳାପରେ ଆମୋଦ ଅନୁଭବ କରୁଥିଲା । ହସିହସି ମିନି ହାତରୁ ଖାତା କଲମ ନିଜ ଆଗକୁ ଟାଣିଆଣି ଲେଖିବାକୁ ବସିଲାରୁ ମିନି ଖାତା ଉପରେ ହାତଦେଇ ବ୍ୟସ୍ତ ହୋଇ କହିଉଠିଲା–

"ହେ ହେ ନୂଆବୋଉ, ସେଦିନ କେମିତି ଖୋଲି ଗାରେଇ ପକେଇଲ ଖାତାଟା ଖରାପ ହୋଇଗଲା !"

ପୁଷ୍ପ ଠିକ୍ ମିନିପରି ଭାବଭଙ୍ଗୀ କରି କହିଲା–

"ହେ ହେ ଖରାପ ହେଲେ ତ ହେବ–କାଗଜ ଖଣ୍ଡେ ତ ଯିବ । ତମେ ହାତ ଛାଡ଼ିଲ ଦେଖିବ ।"

ମିନି ହାତ ଛାଡ଼ିଦେଇ ନିରସ୍ତ ଭାବରେ କହିଲା–

"ହଉ ନିଅ, ଗାରା ।"

ପୁଷ୍ପ ଈଷତ୍ ସ୍ମିତ ଆଖିରେ ମିନିକୁ ଚାହିଁ ଭଲ ଭାବରେ ବସି ଲେଖିଲା–

'ମିନି ଇଜ୍ ଏ ଗୁଡ୍ ଗାର୍ଲ ।'

ମିନି ଦେଖି ତ ଅବାକ୍ ।

ପୁଷ୍ପ ଓଠକୁ ଉଠାଇ ଧରି ବିମୁଗ୍ଧ ବିସ୍ଫାରିତ ଆଖିରେ ତାକୁ ଚାହିଁ କହିଲା–

"ହେ, ନୂଆବୋଉ ! ତମେ ଏମିତି ?"

ପୁଷ୍ପ ସ୍ନେହ ଛଳଛଳ ଆଖିରେ ମିନିକୁ ଚାହିଁ, କଣ୍ଠରେ ଆମୋଦ ମନ୍ଥର ସ୍ୱର ଦେଇ, କହିଲା–

"କେ-ଏ-ମି-ଇ-ତି ?"

ମିନି ଚତୁଷ୍ପଦ ପଶୁଟି ପରି, ପୁଷ୍ପର ଓଠ ଛାଡ଼ିଦେଇ ଆଣ୍ଠୁ ଆଉ ହାତର ଗଣ୍ଠି ଉପରେ ଭରାଦେଇ, ପୁଷ୍ପକୁ ମିନତି କରି କହିଲା–

"ହେ, ହେ ନୂଆବୋଉ, ଲେଖ ଲେଖ, ତୁମକୁ ମୋ' ରାଣ । କେଡ଼େ ସୁନ୍ଦର ଅକ୍ଷର ତୁମର ନୂଆବୋଉ, ଠିକ୍ ଯେମିତି ଛାପା ଅକ୍ଷର ।"

ପୁଷ୍ପ ଲେଖିବାକୁ ଲାଗିଲା । ମିନି କିଛି ସମୟ ଚାହିଁଚାହିଁ କ'ଣ ଭାବି, "ମୁଁ ପାଣି ପିଇଆସେ, ତମେ ଲେଖୁଥା" କହି କ୍ଷିପ୍ର ପଦରେ ଚାଲିଗଲା ।

ଶୁଭେନ୍ଦ୍ର ବହି ଖଣ୍ଡେ ଧରି ନିବିଷ୍ଟ ମନରେ କ'ଣ ପଢୁଥିଲା, ମିନି ଦମକା ପବନ ପରି ଘର ଭିତରେ ପ୍ରବେଶ କରି, ତାହାର ନିବିଷ୍ଟତାକୁ ଉଡ଼ାଇନେଇଗଲା । ଶୁଭେନ୍ଦ୍ର କ'ଣ କହିବା ପୂର୍ବରୁ ମିନି ନିଜ ପାଟିରେ ହାତ ଦେଇ, ଆଖିର ବିସ୍ଫାରିତ ଚାହାଣିରେ ଶୁଭେନ୍ଦ୍ରକୁ ପାଟି ନ କରିବାକୁ ସଙ୍କେତ ଦେଲା ।

ଶୁଭେନ୍ଦ୍ର କିଛି ବୁଝିପାରିଲା ନାହିଁ, କେବଳ ମିନିର ଢଙ୍ଗଢାଙ୍ଗ ଦେଖି ମନେମନେ ହସିବାକୁ ଲାଗିଲା ।

ନିକଟରେ ପହଞ୍ଚି ଶୁଭେନ୍ଦ୍ରର ହାତକୁ ଧରି ଓଟାରିଓଟାରି ମିନି ଫୁସ୍‌ଫୁସ୍ ସ୍ୱରରେ କହିଲା–

"ତମେ ପରା ମନା କରୁଥିଲ, ଦେଖିବ ଆସ, ନୂଆବୋଉ କ'ଣ କରୁଛନ୍ତି । ଚୁପ୍ ଚୁପ୍ କରି ଆସ, କିଛି ଗୋଳମାଳ କରନା ।"

ଶୁଭେନ୍ଦ୍ର ଉଠି, କୌତୂହଳର ବଶବର୍ତ୍ତୀ ହୋଇ ମିନିର ଅନୁଗମନ କଲା ।

ମିନି ଶୁଭେନ୍ଦ୍ରକୁ ନେଇ ପୁଷ୍ପର ପଶ୍ଚାଦ୍‌ଭାଗରେ ଛିଡ଼ାକରାଇଦେଇ, ନିଜେ ଯାଇ କିଛି ନ ଜାଣିଲାପରି ପୁଷ୍ପ ଆଗରେ ବସିପଡ଼ିଲା ।

ପୁଷ୍ପ ଲେଖୁଥିଲା, କିଛି ଜାଣିପାରିଲା ନାହିଁ । ମିନିକୁ ଚାହିଁ ଖାତାଟା ତା'ଆଡ଼କୁ ଠେଲିଦେଇ କହିଲା–

"ନିଅ, ଏମିତି ଲେଖିଲ ।"

ଶୁଭେନ୍ଦ୍ର ମୁଗ୍ଧ ଆଖିରେ ଖାତା ଉପରକୁ ଚାହିଁଥିଲା । ମିନି ତାକୁ ଅନାଇ ଦେଲା ।

ମିନିର ଦୃଷ୍ଟିଗତିକୁ ଅନୁସରଣ କରିବାକୁ ଯାଇ ଲଜ୍ଜାରେ ପୁଷ୍ପ ଢଡ଼ସଡ଼ ହୋଇପଡ଼ିଲା ।

ମନେମନେ ମିନିର ବିଶ୍ୱାସଘାତକତାରେ ରୁଷ୍ଟ ହେଲାପରି ତାକୁ ଚାହିଁଲା ।

ବୁଝିପାରି ଧୀର ଶାନ୍ତ ଭାବରେ ଶୁଭେନ୍ଦ୍ର ସ୍ନେହାର୍ଦ୍ର କଣ୍ଠରେ କହିଲା–

"ମୋର ଧାରଣା ଥିଲା, ତମେ କିଛି ପାଠଶାଠ ପଢ଼ିନା ବୋଲି; କିନ୍ତୁ ମୋର ଭାବିବା ଉଚିତ ଥିଲା ଯେ ପଦ୍ମ କିମ୍ବା ଗୋଲାପ ଏତେ ଯେ ସୁନ୍ଦର କେବଳ ରୂପରେ ତା' ନୁହେଁ, ଗୁଣରେ ମଧ୍ୟ ଶ୍ରେଷ୍ଠ । ଶ୍ରେଷ୍ଠ ପୁଷ୍ପର ସୁବାସ ମଧ୍ୟ ଶ୍ରେଷ୍ଠ ।"

ପୁଷ୍ପ ମୁହଁକୁ ତଳକୁ କରି ଢାକିଢୁକି ହୋଇ ବସି ଅନୁରାଗର ସରମରେ ସେତେବେଳକୁ ଦେହସାରା ତା'ର ଝାଳରେ ପୂର୍ଣ୍ଣ କରିଦେଲାଣି ଦେଖି, ଶୁଭେନ୍ଦ୍ର ଗମନୋଦ୍ୟତ ହୋଇ କହିଲା–

"ହଉ ହଉ ବସି ଲେଖ, ଯା ହେଉ ମୁଁ ଜଣେ କ୍ଲର୍କ ପାଇଲି ।"

କହି ଚାଲିଯିବା ଅବସ୍ଥାରେ ପୁଷ୍ପ ମୁହଁ ଉଠାଇ ଥରେ ତା' ଉପରେ ସଲଜ୍ଜ ସପ୍ରଶ୍ନ ଦୃଷ୍ଟି ପକାଇ ନେଲା । ତା'ର ଡାହାଣ ପାଟିକୋଣରେ ଈଷତ୍ ହାସ୍ୟରେଖା ଟାଣିହୋଇଗଲା ।

ଶୁଭେନ୍ଦ୍ରର ଆଖି ଉପରେ ଗୋଟିଏ ହାସ୍ୟତରଙ୍ଗ ଖେଳିଖେଳି ଚାଲିଗଲା । ସେ ଗଲାପରେ ପୁଷ୍ପ ମିନିକୁ ଧରି କ୍ଷୁଣ୍ଣ ସ୍ୱରରେ କହିଲା–

"ତମେ ଭାରି ଅବିଶ୍ୱାସୀ !"

ମିନି ମୃଦୁ ମୃଦୁ ହସିହସି କହିଲା–

"ଅବିଶ୍ୱାସୀ ନା, ମୁଁ ନା ତ଼ମେ ? ଆଗରୁ କାହିଁକି ମତେ ଲୁଚେଇ ରଖିଥେଲ ?"

ପୁଣି ସ୍ୱରକୁ ନରମ କରି କହିଲା–

"ଆଚ୍ଛା ନୂଆବୋଉ, ତମେ କ'ଣ ପଢ଼ିଚ, ଏମେ ପାସ୍ କରିଚ ?"

ପୁଷ୍ପ ଉଚ୍ଚ ସ୍ୱରରେ ହସିଉଠିଲା–

"ଧେତ୍, ଆମ ଗାଁ ସ୍କୁଲରେ ମାଇନର ପାସ୍ କରିଛି । ସମସ୍ତେ କଣ ତମ ଭାଇଙ୍କ ପରି ଏମ୍.ଏ. ପାସ୍ କରିବେ !"

## ସାତ

ମିନି ଆସିଲା ପୂର୍ବରୁ ଶୁଭେନ୍ଦୁ ପୁଷ୍ପ ବିଷୟରେ ବେଳେବେଳେ ଭାବୁଥିଲେ ହେଁ, ବେଶି ଗଭୀର ଭାବରେ କିଛି ଚିନ୍ତା କରୁନଥିଲା । ତା'ର କାରଣ, ପୁଷ୍ପ କାଳେ ତା' ଭାବନାରେ ସଂକ୍ରମିତ ହେବ, ସେଥିପାଇଁ ସେ ନିଜ ଭାବନାକୁ ପଦାରେ ଦମନ କରି ରଖି, ପୁଷ୍ପ ମନରେ କୌଣସି ପ୍ରକାର ଛାୟାପାତ ନ କରାଇବାକୁ ଯଥୋପରୋନାସ୍ତି ଯତ୍ନ କରୁଥିଲା । ତା'ର ପ୍ରଧାନ କାରଣ, ପୁଷ୍ପ ଦେହରୁ ବିଷର କ୍ରିୟା କାଳେ ଯାଇ ନ ଥିବ। ସେ ଚିନ୍ତିତ ହେଲେ କାଳେ ତା'ର କୌଣସି ମାନସିକ କ୍ଷତି ଘଟିବ ଏବଂ ତା'ର ଏତେ ପରିଶ୍ରମ ସବୁ ପଣ୍ଡ ହୋଇଯିବ । ଏଥିପାଇଁ ଶୁଭେନ୍ଦୁ ମିନିର 'ନୂଆବୋଉ' ଡାକକୁ ସେପରି ମନରେ ଧରେନାହିଁ ।

ଏବେ ଶୁଭେନ୍ଦୁ ପୁଷ୍ପ ଆଖିର ଅନ୍ତରାଳରେ ଭାବିବାର ସୁବିଧା ପାଇଛି । ତା'ର କେବଳ ମାତ୍ର ଏହି ଭାବନାଟି ପ୍ରବଳ ହୋଇଉଠିଛି ଯେ ସେ ପୁଷ୍ପ ପାଇଁ କ'ଣ କରିବ ! ତା'ର ସବୁ ବାଟ ତ ସେ ଆପେ ରୁଦ୍ଧ କରିଦେଇଛି, ସେ ବା କରିବ କ'ଣ ! ସେ ତ ଜାଣି ନ ଥିଲା ଯେ ପୁଣି ସେ ବଞ୍ଚିବ ବୋଲି ! ଆଚ୍ଛା, ପୁଷ୍ପ ବିଷ ଖାଇ ମରିବାକୁ ଯାଉଥିଲା କାହିଁକି ? ମନୁଷ୍ୟର କୌଣସି ପ୍ରକାର ଦୁଃଖ, ଯାତନା ସୀମା ଅତିକ୍ରମ କଲେ, ସେ ଆଉ ନିଜକୁ ସମ୍ଭାଳି ରଖିପାରେ ନାହିଁ । ଏ ଦେହ ଭିତରର ମନକୁ ବହନ କରିବାର କ୍ଷମତା ଯେତେବେଳେ ତା'ର ଲୋପହୁଏ, ତେତେବେଳେ ସେ ଆତ୍ମହତ୍ୟା ହିଁ ଉଚିତ ମନେକରେ । ପୁଷ୍ପର କି ଦୁଃଖ, କି କଷ୍ଟ ! ଏହିମାତ୍ର ଷୋଳଟି ବର୍ଷ ଏ ସଂସାରକୁ ଆସିଛି ସେ । ଏହାରି ଭିତରେ ତା'ର ଏତେ ଅସହନୀୟ ଦୁଃଖ କ'ଣ ହେଲା ଯେ ସେ ଆତ୍ମହତ୍ୟା କରୁଥିଲା ? ହୁଏତ ତା'ର ପିତା ଖୁବ୍ ଗରିବ। ସେଥିପାଇଁ କୌଣସି ଗରିବ ଘରେ ତା'ର ବିବାହ ଠିକ୍ କରିଥିଲା । ଏଥିରେ ଆତ୍ମହତ୍ୟାର କ'ଣ ଥିଲା ? ନୁହେଁ ତ ବରଟି ବୁଢ଼ା ହୋଇଥିବ କି କଦର୍ଯ୍ୟ ବିକଳାଙ୍ଗ ହୋଇଥିବ । ପିତା ତା'ର ସମ୍ପତ୍ତିଲୋଭରେ ବା ଏପରି କରିଥିବ, ହେଲା, ଏଥିପାଇଁ କ'ଣ ଆତ୍ମହତ୍ୟା ? କିମ୍ବା ତା'ର ଏ ଧୈର୍ଯ୍ୟହୀନକାରୀ ରୂପ ପାଇଁ ତା'ର ଯଦି କେହି ସର୍ବନାଶ କରିଥିବ, ସେଥିପାଇଁ ଲଜ୍ଜାରେ... କାହିଁ, ତା'ର ତ ସେ ସବୁ ଲକ୍ଷଣ କିଛି ନ ଥିଲା ! ସେ ତ ଏଠାକୁ ସାତମାସ ହେଲା ଆସିଲାଣି । ଯେପରି ସଦ୍ୟ ଫୁଟିଲା ପଦ୍ମଟି ପରି ଟଳଟଳ ହେଉଛି !

ଶୁଭେନ୍ଦ୍ର ଏହିପରି ବହୁତ ସମୟ ଭାବେ, କିଛି ହେଲେ ଠିକ୍ କରିପାରେ ନାହିଁ ।

ପୁଣି ବେଳେବେଳେ ପୁଷ୍ପର ଭବିଷ୍ୟତ କ'ଣ ହେବ ! ତାକୁ ତ ଆଉ ତାଙ୍କ ସମାଜ ଗ୍ରହଣ କରିବ ନାହିଁ, ସେ ଯିବ କୁଆଡ଼େ ? ସେ ନିଜେ ତ ତାକୁ ଗ୍ରହଣ କରିପାରିବ ନାହିଁ । କେତେ ଦିନ ବା ସେ ତାକୁ ଏହିପରି ଭାବରେ ରଖିବ ! ଧର, ତା'ର ଧନ ଅଛି। ସେ ତାକୁ ବହୁତ ଧନ ଦେଇପାରେ । ମାତ୍ର କେବଳ ତ ଧନ ଯୁବତୀର କାମ୍ୟ ନୁହେଁ ! ଆଉ ତା'ର ପିତ୍ରାଳୟ ! ତା'ର ପିତା ତ ଆଉ ଏ ଲୋକ-ଧ୍ୱଂସକାରୀ, ଅଶେଷ ଦୁଷ୍ଟଚାରୀ ସମାଜଠୁଁ ଅଲଗା ନୁହେଁ । ସେ ବା ତାକୁ ଘରେ ସ୍ଥାନ ଦେବ କିପରି ? ତା'ର ଝିଅ ପ୍ରତି ଖୁବ୍ ସ୍ନେହବଶତଃ ପ୍ରବଳ ଇଚ୍ଛା ହେଲେ ବି ସମାଜ ଭୟରେ ସେ ତାକୁ କେବେହେଁ ଗୃହରେ ସ୍ଥାନ ଦେଇପାରିବ ନାହିଁ । ଯଦିବା ଦିଏ, ତାକୁ ସେହି ଅସ୍ପୃଶ୍ୟା ଭାବରେ ଗଣ୍ଡେ ଖାଇବାକୁ ଦେଇପାରେ । ତାହା ବା କେତେଦିନ ! ତା' ପିତା ତ ଆଉ ପୁଷ୍ପର ଜୀବିତାବସ୍ଥାଯାଏ ବଞ୍ଚିରହିବ ନାହିଁ ! ପୁଣି ତାର ଦଶା କ'ଣ ହେବ ? ପୁଣି ବିଷ ଖାଇ ମରିବ ବା କା'ର ବାସନ ମାଜିବ କିମ୍ୱା କେଉଁ ଅସତ୍ ଚରିତ୍ରଙ୍କର ଲୋଲୁପ ଦୃଷ୍ଟିରେ ପଡ଼ି ତାଙ୍କ ନିଭୃତ ଆଡ଼ାର ଭୋଗ୍ୟ ସାମଗ୍ରୀ ହୋଇ ରହିବ, ଅବା ବେଶ୍ୟାବୃତ୍ତି କରିବ ।

ଶୁଭେନ୍ଦ୍ର ଆଉ ବେଶି ଭାବିପାରିଲା ନାହିଁ, ଉପରକୁ ଚାହିଁରହିଲା । ପୁଣି ତା'ର ମନେହେଲା, ପୁଷ୍ପ କେବେହେଁ ବେଶ୍ୟାବୃତ୍ତି କରିପାରିବ ନାହିଁ । ସେ ସାହସ ତା'ର ନାହିଁ । ଯଦି ଥାଆନ୍ତା, ସେ ଆତ୍ମହତ୍ୟା କରୁଥିଲା କାହିଁକି ? ବରଂ ଏହିପରି ଘୃଣ୍ୟ ସମାଜରେ ରହିବା ଅପେକ୍ଷା ବେଶ୍ୟା ହେବା ସହସ୍ର ଗୁଣେ ଭଲ । ପୁଣି ଭାବେ—

ଏତେ ସୁନ୍ଦର ସେ ! ଏତେବଡ଼ ସୌନ୍ଦର୍ଯ୍ୟର ଆବରଣ ଦେଇ ଏତେ ପରିଶ୍ରମ କରି ବିଶ୍ୱଶିଳ୍ପୀ ଗଢ଼ିଛି ତାକୁ କ'ଣ ଭିତରେ କୌଣସି ହୀନପ୍ରବୃତ୍ତି ରଖିବାକୁ ! ସ୍ରଷ୍ଟା କେବେହେଁ ଏଡ଼େ ମୂର୍ଖ ନୁହେଁ । କେହି କେବେ ମାଣିକ୍ୟଖଚିତ ରତ୍ନମୟ ପେଟିକାରେ ପୁରୀଷ ସମ୍ପାଦି ରଖିପାରେ ? ପୁଣି ଭାବିଲା—

ସତ୍ୟ କଥା କିଏ ବା ବିଶ୍ୱାସ କରିବ ଯେ ଜଣେ ଯୁବକ ନିକଟରେ ଏତେ ଦିନ ରହି ଜଣେ ରୂପସୀ ଯୁବତୀ ଶୁଦ୍ଧ, ପବିତ୍ର ଆଉ ନିର୍ମଳ ଅଛି ? ଯେଉଁ ଦେଶର କଦର୍ଯ୍ୟ, ବୁଭୁକ୍ଷୁ ରକ୍ଷଣଶୀଳ ସମାଜ ଦିନେ ସୀତା ଦେବୀଙ୍କୁ ଅଗ୍ନିରେ ପକାଇ ପରୀକ୍ଷା କରି ମଧ୍ୟ ବିଶ୍ୱାସ କରିପାରିନଥିଲା, ତା'ର ଲୋକଧ୍ୱଂସକାରୀ କ୍ଷୁଧା ମେଣ୍ଟାଇ ନ ପାରି ବନବାସ ମଧ୍ୟ ଦେଇଥିଲା, ସେ ଦେଶରେ ଯେ ଗୋଟିଏ ହେଲେ କେହି ହୃଦୟବାନ୍

ବ୍ୟକ୍ତି ବାହାରିବେ, ଯେ କି ଏହି କଥାକୁ ସତ୍ୟ ମନେକରିବେ ? ଏକଥା ଭାବି ଶୁଭେନ୍ଦ୍ର ଉତ୍ସାହଶୂନ୍ୟ ହୋଇପଡ଼ିଲା ।

ପୁଣି ତା'ର ମନେହେଲା–

କାହିଁକି ସେ ତାକୁ ବଞ୍ଚେଇଲା । ଯେଉଁ ଦେଶର ମନୁଷ୍ୟ ନିଜ ଭାଇର ପ୍ରତ୍ୟେକ ବିନ୍ଦୁ ରକ୍ତ ନିଃଶେଷ ଭାବରେ ଶୋଷିପିଇ ମଧ ତୃପ୍ତ ହୁଏନାହିଁ, ଯେଉଁ ଦେଶରେ ମନୁଷ୍ୟର ବିକାଶ ମାର୍ଗର କଣ୍ଟକ ଆଉ ସଭ୍ୟତାର ଘୋର କଳଙ୍କ ସ୍ୱରୂପ ଜାତିପ୍ରଥା ଅଛି, ଆଉ ଏହାର ଫଳସ୍ୱରୂପ କେତେକ ନରପିଶାଚଙ୍କର ସ୍ୱାର୍ଥସିଦ୍ଧିର ଯନ୍ତ୍ର ସମାଜ ଅଛି, ସେଠାରେ ମନୁଷ୍ୟକୁ ବଞ୍ଚେଇବାର ଯତ୍ନ ବାତୁଳତା ମାତ୍ର ।

ତଥାପି ଶୁଭେନ୍ଦ୍ର ଭାବିଲା–

ତାକୁ ଯେତେବେଳେ ସେ ବଞ୍ଚାଇସାରିଛି, ତା'ପାଇଁ ପ୍ରାଣ ଦେବ ପଛକେ, ତା'ର କୌଣସି ଅନିଷ୍ଟ ଘଟିବାକୁ ଦେବନାହିଁ ।

ଏହିପରି ଦିନେ ଭାବୁଛି, କେତେବେଳେ ମିନି ଆସି ତା' ପଛରେ ଚେୟାରଟି ଧରି ଛିଡ଼ା ହୋଇଛି, ସେ ଜାଣେନାହିଁ ।

ମିନି ବେଶି ସମୟ ଧୈର୍ଯ୍ୟଧରି ଛିଡ଼ା ହୋଇ ରହିପାରିଲା ନାହିଁ, ଖିଙ୍କ୍ କରି ହସିଉଠିଲା । ଶୁଭେନ୍ଦ୍ର ବୁଲିପଡ଼ି ଦେଖିଲା, ମିନି ଆଉ ତା' ପଛରେ ବନ୍ଧ ସେ ପାଖରେ କାନ୍ଥକୁ ଆଉଜି ଈଷଦୃଶ୍ୟାବସ୍ଥାରେ ଛିଡ଼ାହୋଇଛି ପୁଷ୍ପ ।

ଶୁଭେନ୍ଦ୍ରର ଦୃଷ୍ଟି ପୁଷ୍ପ ଉପରେ ପଡ଼ିଲାକ୍ଷଣି, ପୁଷ୍ପ ଆହୁରି ଟିକିଏ ଅନ୍ତରାଳକୁ ଘୁଞ୍ଚିଗଲା ।

ଦୃଷ୍ଟି ଫେରାଇ ଆଣି ଶୁଭେନ୍ଦ୍ର ପଛ ଆଡ଼କୁ ହାତ ବଢ଼ାଇ, ମିନିର ମୁଣ୍ଡକୁ ଧରି ତା' ନିଜ ମୁଣ୍ଡରେ ଠୁକଉଠୁକେଉ, ସ୍ନେହମମତାବୋଳା କୃତ୍ରିମ କୁପିତ ସ୍ୱରରେ କହିଲା–

"ତୋ' ମୁଣ୍ଡ ଆଜି ଫଟେଇଦେବି, ମିନି । କହିଲୁ ମତେ କାହିଁକି ଚମକାଇବାକୁ ବସିଥିଲୁ ?"

ମିନି ସେହିପରି ଥାଇ ଠୋ ଠୋ ହସିହସି କହିଲା–

"ଆରେ, ମୁଁ କ'ଣ ଭୂତ ହୋଇଛି କି ତୁମକୁ ଚମକେଇବି ?"

ସେହିପରି ମୁଣ୍ଡର ସଂଘର୍ଷ କରୁକରୁ ଶୁଭେନ୍ଦ୍ର କହିଲା–

"ଆଚ୍ଛା ତୁ ଭୂତ ଦେଖିଛୁ ?"

ମିନି 'ଆରେ ଆରେ' ହେଉହେଉ କହିଲା—

"ଆରେ, ମୁଁ କ'ଣ ବଡ଼ ମଣିଷ ହୋଇଚି କି ଭୂତ ଦେଖିବି ? ଆଛା ନନା !"

"କ'ଣ ?"

"ତମେ ଭୂତ ଦେଖିଚ ?"

"ଦେଖିଛି ।"

"ଆରେ, ମୁଣ୍ଡ ଝାଇଁଝାଇଁ ହୋଇଯାଉଚି । କୋଉଠି ? ଆମ ବଡ଼ ବରଗଛରେ ? କ'ଣ ଗୋଡ଼କୁ ଲମ୍ବାଇ ବସିଥିଲା ? ରାତିରେ ନା ଦିନରେ ?"

"ଦିନରେ ତ ଦେଖିଛି ।"

"ଗଛ ଉପରେ ନା ସଡ଼କ ଉପରେ ? କୋଉଠି ?"

'ଏଇଠି ତ, ଗଛ ଉପରେ କାହିଁ ହବ !"

"ଏଇଠି, ଏଇ ଘରେ ?"

ମିନିର ଦେହ ଶୀତେଇ ପଡ଼ିଲା, କହିଲା–

"ଇଲୋ !"

ଶୁଭେନ୍ଦ୍ର ହସିଦେଇ କହିଲା–

"ଦେଖ୍ ତତେ କେମିତି ଚମକାଇଦେଲି ।"

ମିନି ଉଚ୍ଚସ୍ୱରରେ ହସିହସି କହିଲା–

'ଇରେ ମିଛରେ ।'

"ମିଛରେ କାହିଁ, ସତରେ ତ !"

"ସତରେ ନା, ଆଛା କହିଲ, ସେ କେମିତିକା ?"

"ସେ ଠିକ୍ ତୋ' ପରି" ହସିହସି କହିଲା ଶୁଭେନ୍ଦ୍ର ।

ମିନି ହସିଉଠି କହିଲା–

"ଆଉ ମଲେ ସିନା ଭୂତ ହୁଅନ୍ତି, ମୁଁ ତ ଜିଇଁଚି ।"

"ତୁ ତା' ହେଲେ ଜିଅନ୍ତା ଭୂତ ।"

"ହଁ, ଅଣ୍ଡିରିପୁଅ ସିନା ଭୂତ ହୁଅନ୍ତି, ଆଉ କ'ଣ ମାଇକିନା ଝିଅ ! ଇସ୍, ମୋ' ମୁଣ୍ଡ କ'ଣ ହୋଇଗଲା ।"

"ଆଉ ମାଇକିନା ଝିଅ ହୁଅନ୍ତି ଡାଆଣୀ ।"

ପୁଷ୍ପ କେତେବେଳେ ଗୋଡ଼ ଚିପିଚିପି ଆସି ମିନି ପଛରେ ଛିଡ଼ା ହୋଇ ତା'ର ଉଚ୍ଛୃଙ୍ଖଳ ହାସ୍ୟ ବେଗକୁ ଦନ୍ତରେ ଚିପିଧରିଥିଲା । ମିନିର କଥା ନସରୁଣୁ ଉଭୟ ଶୁଭେନ୍ଦ୍ର ଆଉ ମିନି ବେକରେ ଫୁଲମାଳଟି ପକାଇଦେଇ, ହଠାତ୍ କ୍ରମାନ୍ୱୟରେ ଚାରି ପାଞ୍ଚଟା ବୀଣା ତା'ର ଛିଡ଼ିଗଲାପରି ଲଳିତ ମଧୁର ସ୍ୱରରେ ହସିଉଠି କହିଲା–

"ଆଜି ଜିଅନ୍ତା ଭୂତ ସାଙ୍ଗରେ ଜିଅନ୍ତା ଡାଆଣୀର ସ୍ୱୟମ୍ବର ହେଲା ।" କହିସାରି ସଙ୍ଗେସଙ୍ଗେ ହୁଳହୁଳି ପକାଇଦେଲା ।

ଶୁଭେନ୍ଦ୍ର ହଠାତ୍ ହାତ ଛାଡ଼ିଦେଲା ମିନି ମୁଣ୍ଡରୁ ।

ମିନି ତତ୍କ୍ଷଣାତ୍ ନିଜ ବେକରୁ ମାଳଟି ଖସାଇଦେଇ ପୁଷ୍ପ ଆଡ଼କୁ ବୁଲିପଡ଼ି, ଈଷତ୍ ରାଗର ସହିତ କହିଲା–

"ବାଃରେ, ଭାରି ତ ଚାଲାକ ! ମୋର କାହିଁକି ସ୍ୱୟମ୍ବର ହବ ? ମୁଁ କ'ଣ ଦମୟନ୍ତୀ କି ? ତମେ ହଉନା ?"

ପଛ ପାଖକୁ ଝୁଲୁଥିବା ଫୁଲମାଳଟି ଧୀର ଭାବରେ ପୁଷ୍ପ ଶୁଭେନ୍ଦ୍ର ଆଗ ପାଖକୁ ଠେଲିଦେଲା ।

ଶୁଭେନ୍ଦ୍ର ହଠାତ୍ ମୁହଁ ବୁଲାଇ ଦେଖିଲା, ଅପୂର୍ବ ସୁଷମାମୟୀ ପୁଷ୍ପ ତା'ଆଡ଼କୁ ଚାହିଁ ମୁରୁକିମୁରୁକି ହସୁଛି । ମିନି ପାଖରେ ଥିଲା ବୋଲି ସେ ବେଶି ସମୟ ଚାହିଁପାରିଲା ନାହିଁ । ମିନିର ଦୁଇ ହାତକୁ ଧରି ହଲାଇହଲାଇ ପଚାରିଲା–

"ଫୁଲ କିଏ ଗୁନ୍ଥିଛି ?"

ମିନି ପଛଆଡ଼େ ପୁଷ୍ପ ପ୍ରତି ଦୃଷ୍ଟି ପକାଇ ହସିହସି କହିଲା–

"ମୁଁ କ'ଣ ଏଡ଼େ ସୁନ୍ଦର ଗୁନ୍ଥିପାରିବି ? ନୂଆବୋଉ ଗୁନ୍ଥିଛନ୍ତି ।"

ମିନି କଥା ଶୁଣି ପୁଷ୍ପର ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା । ଶୁଭେନ୍ଦ୍ରର ମୁହଁ ଯେ ଲଜ୍ଜାରେ ବିବର୍ଣ୍ଣ ହୋଇଗଲା, ଏକଥା ପୁଷ୍ପ ଦେଖିପାରିଲା ନାହିଁ ।

କ୍ଷଣକ ପରେ ଶୁଭେନ୍ଦ୍ର ମିନିକୁ କହିଲା–

"ଗଲୁ, ତୁ କ'ଣ ଗୀତ ଶିଖିଚୁ, ଗାଇଲୁ ।"

ମିନି ହସିହସି ବେଣୀର ଝୁମ୍ପାଟିକୁ ହାତରେ ବାଡ଼େଇ ବାଡ଼େଇ ହଲି ହଲି ଦଉଡ଼ି ଦଉଡ଼ି ଚାଲିଗଲା । ଶୁଭେନ୍ଦ୍ର ତା'ର ଗତି ଲକ୍ଷ୍ୟ କରୁକରୁ ଦେଖିଲା, ପୁଷ୍ପ

ତା'ର ସେହି ଜଗନ୍‌ମୋହନୀ ଠାଣିରେ ଲକ୍ଷ୍ମୀପ୍ରତିମାଟି ପରି ଛିଡ଼ାହୋଇ ତାକୁ ସହାସ କୌତୁକ ଦୃଷ୍ଟିରେ ଚାହିଁଛି ।

ଶୁଭେନ୍ଦ୍ରର ମୁହଁରେ ଭାବନାର ଛାଇ ମାଡ଼ିଯାଇଥିଲା । ସେ ହଠାତ୍ କପାଳ ଉପରେ ହାତଟା ବୁଲାଇ ଆଣି ପୁଷ୍ପକୁ ଚାହିଁଲା ।

ଶୁଭେନ୍ଦ୍ରର ମୁହଁରେ ଏହି ଚକ୍ଷୁ ମିଳନର ଯେଉଁ ହାସ୍ୟରେଖା ଫୁଟିଆସୁଥିଲା ପୁଷ୍ପର ରୂପମାଧୁରୀରେ ତାହା ମିଳାଇଗଲା । ସେ କେବଳ ସ୍ୱପ୍ନାବେଶପୂର୍ଣ୍ଣ ଦୃଷ୍ଟିରେ ତାକୁ ଚାହିଁରହି ଦେଖିଲା–ତା'ର ଲାବଣ୍ୟମୟ ତନୁଲତାର ଲୀଳାୟିତ ଭଙ୍ଗିମା, ଓଷ୍ଠାଧରର ଲଘୁ ଚପଳା ହାସ୍ୟ, ତା'ର ସଦ୍ୟସ୍ନାତ ସୌରଭ ।

ଭାବିଲା–ଏ କ'ଣ ମନୁଷ୍ୟର ସୌନ୍ଦର୍ଯ୍ୟ, ଏ କ'ଣ ବାସ୍ତବ ନା ଏ ସ୍ୱପ୍ନ ! ତା'ର ବିଶ୍ୱାସ ହେଲାନାହିଁ ନିଜର ଆଖିକି ।

ସେ ଉଠିଗଲା ପରୀକ୍ଷା କରିବାକୁ । ଯାଇ ଦୁଇହାତରେ ପୁଷ୍ପର ମୁହଁକୁ ଟେକିଧରି, ତାକୁ ନିର୍ନିମେଷ ବିହ୍ୱଳ ଦୃଷ୍ଟିରେ ଚାହିଁରହିଲା । ଜଣାଗଲା, ଯେପରି ଶୁଭେନ୍ଦ୍ର ନିଜର ଅନ୍ତର-ଦେବତାକୁ ସଦ୍ୟବିକଶିତ ପଦ୍ମଫୁଲଟିଏ ପୁଷ୍ପାଞ୍ଜଳି ଅର୍ପଣ କରୁଛି ।

ପୁଷ୍ପ ତା'ର ଫୁଲମାଳର ପୁରସ୍କାର ଆଗକରି ସାଦରେ ଗ୍ରହଣ କରିବାକୁ ଗଣ୍ଡଦେଶକୁ ତା'ର ଆଗେଇଦେଇ ଆଖିପତା ତଳକୁ ନୋଇଁଦେଲା ।

ନାରୀର ଅନ୍ତର ଯେତେବେଳେ ମିଳନ ଆକାଂକ୍ଷାରେ ଉତ୍କଣ୍ଠିତ ହୋଇଉଠେ, ପ୍ରଭାତର ସୂର୍ଯ୍ୟରଶ୍ମିରେ ମେଘଖଣ୍ଡ ପ୍ରତିଭାତ ହେଲାପରି ନାରୀର ସର୍ବ ଶରୀର ଉପରେ ତା'ର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଆସି ବିଚ୍ଛୁରିତ ହୋଇପଡ଼େ । ତେତେବେଳେ ସ୍ୱାଭାବିକ ନାରୀର ସୌନ୍ଦର୍ଯ୍ୟ ଦ୍ୱିଗୁଣିତ ହୋଇଯାଏ; କିନ୍ତୁ ପୁରୁଷ ଆଖିରେ ତାହା ଶତଗୁଣରେ ଦେଖାଦିଏ । ଏଥିପାଇଁ ସ୍ୱଭାବସୁନ୍ଦରୀ ପୁଷ୍ପର ଏହି ଅତି ଲୋଭନୀୟ ରୂପମାଧୁରୀ, ଯୁବକ ଶୁଭେନ୍ଦ୍ରର ଚେତନାକୁ ବିଲୁପ୍ତପ୍ରାୟ କରିଦେଲା । ସେ ଈଷତ୍ ମୁଣ୍ଡ ନୁଆଁଇ, ପୁଷ୍ପର ମୁହଁକୁ ନିଜ ମୁହଁ ନିକଟକୁ ଆଣି ବିହ୍ୱଳ ଭାବରେ ଚାହିଁରହିଲା ।

ପୁଷ୍ପ ତା'ର ଏହି ନ୍ୟାଯ୍ୟ ପାଉଣା, ପତ୍ନୀତ୍ୱର ଦାବି ଶୁଭେନ୍ଦ୍ରଠାରୁ ପାଇବାପାଇଁ ବହୁ ଆଗରୁ ନିଜକୁ ପ୍ରସ୍ତୁତ କରି, ଉଦ୍‌ବିଗ୍ନ ଚିତ୍ତରେ ଅପେକ୍ଷା କରୁଥିଲା । ଏହି ଦୀର୍ଘ ଛ'ମାସ ହେଲା, ସେ ଭୁଲ୍‌ରେ ହେଲେ ଶୁଭେନ୍ଦ୍ରଠାରୁ କୌଣସି ଆଭାସ ପାଇ ନଥିଲା । ସେ କେବଳ ଭାବୁଥିଲା, ତା' ଦେହରୁ ବିଷ ଦୋଷ ବୋଧହୁଏ ଯାଇନାହିଁ ବୋଲି

ଶୁଭେନ୍ଦ୍ର ତା' ଉପରେ ସ୍ୱାମୀତ୍ୱର ଦାବି ଖଟାଇପାରୁନାହିଁ । ବର୍ତ୍ତମାନ ସେହି ଦାବି ତା'ର ପୂରଣ ହେଉଛି ଜାଣିପାରି, ଦେହସାରା ତା'ର ଗୋଟିଏ ଅନିର୍ବଚନୀୟ ପୁଲକ ତା' ଅନ୍ତରକୁ ବେପୁଥମୟ କରି ଖେଳିଗଲା । ଏତିକିବେଳେ ଶୁଭେନ୍ଦ୍ରର ଅଧର ପୁଷ୍ପର ଜବାକୁସୁମନିନ୍ଦି ଓଷ୍ଠାଧରରେ ସଂଯୋଗ ହେବା ଅବସ୍ଥାରେ, ଶୁଭେନ୍ଦ୍ରର ଉଷ୍ଣ ନିଶ୍ୱାସ ଅପଟୁ ପୁଷ୍ପ ଗଣ୍ଡରେ ମୋହମାଦକତାର ହର୍ଷରେଖା ଫୁଟାଇଦେଲା ।

ପୁଷ୍ପ ହସିଦେଲାକ୍ଷଣି ଶୁଭେନ୍ଦ୍ରର ମନେପଡ଼ିଗଲା ସେଦିନର କଥା । ସେ ଯେ କି ଶକ୍ତି ବଳରେ ଏ ଦୁର୍ଦ୍ଦମନୀୟ, ଦୃଢ଼ମୁଷ୍ଟିବଦ୍ଧ ମୋହର କବଳରୁ ନିଜକୁ ବଞ୍ଚାଇ ଆଣିଲା ସେକଥା ସେ ଜାଣେ; କିନ୍ତୁ ପରକ୍ଷଣରେ ପୁଷ୍ପ ଏତିକିମାତ୍ର ପାଇଲା, ଶୁଭେନ୍ଦ୍ର ସୋହାଗମିଶା ବିହ୍ୱଳ କଣ୍ଠରେ କହିଲା–

"ପୁଷ୍ପରାଣୀ, ତମକୁ ପରା ଭଲ ଗୀତ ଗାଇଆସେ ?"

ପୁଷ୍ପ ତତ୍‌କ୍ଷଣାତ୍ ଶୁଭେନ୍ଦ୍ରଠାରୁ ନିଜକୁ ମୁକ୍ତ କରିନେଇ ପହଣ୍ଡେ ଖଣ୍ଡେ ଦୂରକୁ ଘୁଞ୍ଚି ଛିଡ଼ାହେଲା । ସେତେବେଳକୁ ତା'ର ଚିତ୍ତର ଚାଞ୍ଚଲ୍ୟ ପ୍ରତି ଶିରାପ୍ରଶିରାକୁ ଉତ୍‌କ୍ଷିପ୍ତ କରିଦେଇଥିଲା । ସେ ବହୁକଷ୍ଟରେ ନିଜକୁ ସମ୍ଭାଳିନେଇ, ଏକ ଅପୂର୍ବ ଭଙ୍ଗୀରେ ଛିଡ଼ା ହୋଇ, ମୃଦୁ ମୃଦୁ ହସି କହିଲା–

"ମତେ ଚିହ୍ନିପାରିଲ ? ମୁଁ ତମର କି ଆଉ କା'ର !"

ଏହା କହି ସେ ତା'ର ପୁଷ୍ପଧନୁ ପ୍ରତୀକ ଗ୍ରୀବା ବକ୍ର କରି, ଏକ ସୁତୀକ୍ଷ୍ଣ କଟାକ୍ଷ ଶୁଭେନ୍ଦ୍ର ଉପରେ ନିକ୍ଷେପ କରି, ତା'ର ଗତିପଥକୁ ସାବଲୀଳ, ମଧୁର ଗତିଛନ୍ଦରେ ନଚାଇନଚାଇ ମିନି ନିକଟକୁ ଚାଲିଗଲା । ସେ ତା'ର ଏହି କଟାକ୍ଷରେ କହିଗଲା– ଆଚ୍ଛା, ଦେଖିବା, ପୁରୁଷଜାତି ତମେ ଆଉ କେତେଦିନ ଏମିତି ରହିବ !

ପୁଷ୍ପର ଏହି ତୀକ୍ଷ୍ଣ କଟାକ୍ଷ ଶୁଭେନ୍ଦ୍ରର ହୃଦୟର ଏତେ ଗଭୀରତମ ସ୍ଥାନରେ ଯାଇ ବାଜିଥିଲା ଯେ ସେ ବିମୂଢ଼ ପରି ବହୁକ୍ଷଣ ସେଠାରେ ଛିଡ଼ାହୋଇରହିଲା । କ୍ରମେ ଏତେ ଦୁର୍ବଳତା ବୋଧ କଲା ଯେପରି ତା'ର ସମସ୍ତ ଶକ୍ତି କିଏ ଅପହରଣ କରିନେଇଛି । ସେ ଧୀରେଧୀରେ ଯାଇ ଚେୟାରଟିରେ ବସିପଡ଼ି, ବାହୁ ଭିତରେ ମୁଣ୍ଡ ରଖି ଟେବୁଲ ଉପରକୁ ଆଉଜିପଡ଼ିଲା ।

ପୁଷ୍ପ ମିନିର ଗୀତ ଶୁଣିବାରେ ମନ ଦେଇପାରିଲା ନାହିଁ । ତା' ମନ କିପରି ଗୋଳେଇଘାଣ୍ଟି ହେଲା । ସେ ଧୀରେ ଧୀରେ ଉଠିଆସି ଶୁଭେନ୍ଦ୍ରକୁ ଏହିପରି ଅବସ୍ଥାରେ ଦେଖି, ନିଜର ଅବସ୍ଥା ସାଙ୍ଗରେ ମିଳାଇ ଦେଖିଲା ଶୁଭେନ୍ଦ୍ରକୁ କେତେ ବାଧୁଥିବ ।

ସେ ଅବିଳମ୍ବରେ ପଙ୍ଖା ଖଣ୍ଡେ ହାତରେ ଧରି, ଚେୟାର ପଛରେ ଛିଡ଼ା ହୋଇ ବିଞ୍ଚିବାକୁ ଲାଗିଲା ।

ଥଣ୍ଡା ପବନର ସ୍ପର୍ଶ ଅନୁଭବ କରି ଶୁଭେନ୍ଦ୍ର ଧୀରେ ମୁଣ୍ଡ ଉଠାଇବାକୁ ଚେଷ୍ଟା କଲା; କିନ୍ତୁ ଚିନ୍ତାଭାରରେ ତା' ମୁଣ୍ଡ ଏତେ ଓଜନ ହୋଇଯାଇଥିଲା ଯେ ସେ କିଞ୍ଚିତ ମୁଣ୍ଡ ଉଠାଇ, ପୁଣି ସେହିପରି ମୁଣ୍ଡ ତଳକୁ କଲା ।

ପୁଷ୍ପ କିଛି ବୁଝିପାରିଲା ନାହିଁ । ପଙ୍ଖାଟି ଥୋଇଦେଇ ସରାଗରେ ଶୁଭେନ୍ଦ୍ରର ମୁହଁଟିକୁ ଟେକି ଧରି, ନିଜର ଲୁଗାକାନିରେ ତା' ବେକରୁ ଝାଳ ପୋଛି ଦେଉଁ ଦେଉଁ, ମମତାବିଗଳିତ ବ୍ୟଥିତ କଣ୍ଠରେ କହିଲା–

"ମା'ଲୋ, ଏ ଶୀତଦିନଟାରେ କେତେ ଝାଳ ବୋହିଗଲାଣି ଦେଖ ମ !"

ଝାଳ ପୋଛିଦେଇସାରି ଯତ୍ନର ସହିତ ଶୁଭେନ୍ଦ୍ରର ମୁହଁ ଉପରେ ତା'ର ପେଲବ ହାତର ପାପୁଲିଟିକୁ ବୁଲାଇଆଣିଲା ଏବଂ ପୁଣି ଦୁଇ ହାତରେ ମୁହଁଟିକୁ ଉଠାଇଧରି ପ୍ରେମାନୁରାଗ-ବିଚ୍ଛୁରିତ ବିସ୍ଫାରିତ ଆଖିରେ ଚାହିଁରହି ଆଦର କରି କହିଲା–

"ଅନା'ମ, ଏ କ'ଣ ହଉଚି ?"

ଈଷତ୍ ଚକ୍ଷୁ ଉନ୍ମୋଚନ କରି ଶୁଭେନ୍ଦ୍ର ପରମୁହୂର୍ତ୍ତରେ ପୁଣି ଚକ୍ଷୁ ନିମୀଳିତ କରିଦେଲା । ପୁଷ୍ପ ଆଖିରେ ଏ ଅନାବିଳ ସରଳ-ବିଶ୍ୱାସର ଦୀପ୍ତ ଚାହାଣି ସେ ସହ୍ୟ କରିପାରିଲା ନାହିଁ ।

ପୁଷ୍ପ ଶୁଭେନ୍ଦ୍ରର ମୁହଁକୁ ମୃଦୁ ଭାବରେ ହଲାଇଦେଇ, ମଧୁର ଆଦେଶ ଦେଲା ଭଙ୍ଗୀରେ–

"ଶୁଭୁଛିନା ? ଚାଲ, ସେ ଖଟ ଉପରକୁ ଶୋଇବ ଚାଲ, ମୁଁ ବିଞ୍ଚିଦେବି ।"

ଶୁଭେନ୍ଦ୍ର ମନ୍ତ୍ରମୁଗ୍ଧପରି ଖଟ ଉପରକୁ ଆସି କାନ୍ଥ କରକୁ ମୁହଁ କରି ଶୋଇପଡ଼ିଲା । ପୁଷ୍ପ ଖୁବ୍ ଜୋର୍‌ରେ ପଙ୍ଖା କରିବାକୁ ଲାଗିଲା ।

ଶୁଭେନ୍ଦ୍ର ଏତେ ଅସୁସ୍ଥତା ଅନୁଭବ କରୁଥିଲା ଯେ ପ୍ରବଳ ଇଚ୍ଛା ସତ୍ତ୍ୱେ ସେ ପୁଷ୍ପକୁ ବାରଣ କରିପାରିଲା ନାହିଁ ।

ପୁଷ୍ପ ଶୁଭେନ୍ଦ୍ରର ମୁହଁରୁ ତା' ମନର ଅବସ୍ଥା ବେଶ୍ ଅନୁଭବ କରିପାରିଥିଲା । କିଛିକ୍ଷଣ ପରେ ତା' ଉପରେ କାନ୍ଥ ଆଡ଼କୁ ଝୁଙ୍କିପଡ଼ି ତା'ର ମୁଦ୍ରିତ ଆଖିକୁ ହାତରେ ଖୋଲିବାକୁ ଚେଷ୍ଟା କରି, କୌତୂହଳର ସହିତ ପଚାରିଲା–

"କି, କ'ଣ ହେଲା କି ?"

ପୁଷ୍ପ ଶୁଭେନ୍ଦ୍ର ଉପରକୁ ଆଉଜିପଡ଼ିଲାବେଳେ, ତା'ର ଦେହଲତା ଶୁଭେନ୍ଦ୍ରର ବାହୁ ଉପରେ ଚାପିହୋଇଗଲା ।

ଶୁଭେନ୍ଦ୍ରର ଧୈର୍ଯ୍ୟ, ପୁଷ୍ପର ଏହି କୋମଳ ଦେହର ଚାପରେ ଚାପିହୋଇଯାଇ ଶ୍ୱାସରୁଦ୍ଧ ହୋଇପଡ଼ିଲା । ତା' ଦେହସାରା ଝିମିଝିମି ହୋଇଗଲା ।

ତରୁଣୀର ଶରୀରସ୍ପର୍ଶ ଯୁବକକୁ ଦୁର୍ବଳ କରେ ଯେତିକି, ସବଳ କରେ ମଧ ସେତିକି ।

କ୍ଷଣକ ପରେ ଶୁଭେନ୍ଦ୍ରର ପୂର୍ବ ଅବଶତା ଦୂର ହୋଇଗଲା । ସେ ବାହୁ ଉଠାଇବାକୁ ଚେଷ୍ଟା କରି ଅନୁଭବ କଲା, ଯେପରି ତା' ବାହୁ ଉପରେ କେଉଁ ଭାରୀ ପଦାର୍ଥ ଥୁଆହୋଇଛି । ସେ ନୀରବରେ ପୁଷ୍ପକୁ ଚାହିଁଦେଇ ଲଜ୍ଜାରେ ପୁଣି ଆଖି ମୁଦିଦେଲା ।

କିନ୍ତୁ ଅହଙ୍କାରୀ ନାରୀ ପ୍ରକୃତ ପୁରୁଷକୁ ଜୟ ନ କଲାଯାଏ ସ୍ଥିର ହୋଇ ରହିପାରେନାହିଁ ।

ପୁଷ୍ପ ବୁଝିପାରି କହିଲା—

"କି ? ଏମିତି କାହିଁକି ହଉଚ ! ମୋ ଦେହରୁ କ'ଣ ବିଷ ଲାଗିଗଲା କି ?"

ଏହା କହି ଶୁଭେନ୍ଦ୍ରର ମୁହଁରେ ଆଦରର ସହିତ ହାତ ବୁଲାଇଦେଇ, ତା' ଚିବୁକଟିକୁ ଧରି ହଲାଇଦେଲା ।

ଏହିପରି ସମୟରେ ମିନି ଘରେ ପ୍ରବେଶ କରୁଥିବାର ଦେଖି, ପୁଷ୍ପ ଉଠିଆସି ମିନିକୁ କୁଣ୍ଢାଇ ଘେନି ବାରଣ୍ଡାକୁ ଚାଲିଯାଇ ଭାବିଲା, ଶୁଭେନ୍ଦ୍ର ତା' ମୁହଁ ଟେକି ଧରିବାବେଳେ ତା' ମନରେ ଯେଉଁ ଦୁର୍ବଳତା ଆସିଥିଲା ଶୁଭେନ୍ଦ୍ରର ମଧ ସେଇଆ ଘଟିଲା । ସେ ତାକୁ ସହିନେଲା; କିନ୍ତୁ ଶୁଭେନ୍ଦ୍ର ସହି ନପାରି ଏପରି ହେଲା !

## ଆଠ

ଶୁଭେନ୍ଦ୍ର ପୁଷ୍ପର ଏପରି ବ୍ୟବହାରରେ ଘୋର ବିସ୍ମିତ ହୋଇ ଭାବୁଛି, ପୁଷ୍ପ ତା' ପ୍ରତି ଯେପରି ଆଚରଣ କରୁଛି ସେଥିପାଇଁ ସେ ନିଜେ ଦାୟୀ । ଏହା ପୁଷ୍ପର ଦୋଷ ନୁହେଁ, ଦୋଷ ତା'ର । ସେ ତ ଆଜିଯାଏ ପୁଷ୍ପକୁ କିଛି ଜଣାଇନାହିଁ ! କିପରି କଅଣ ବା' ଜଣାଇବ ! ପୁଷ୍ପ ସମ୍ପୂର୍ଣ୍ଣ ରୂପେ ଜାଣିଛି ଯେ ସେ ତାକୁ ହିଁ ବିବାହ କରିଛି । ସେ ଆତ୍ମହତ୍ୟା ଭିତରେ ଯାହା ଥାଉ, ଧର୍ମତଃ ସେ ତା'ର ପତ୍ନୀ । ସେଥିପାଇଁ

ପତ୍ନୀର ସ୍ୱାମୀଠାରୁ ଯାହା ନ୍ୟାଯ୍ୟ ପ୍ରାପ୍ୟ, ସେ ତାହାହିଁ ଦାବି କରୁଚି । ମାତ୍ର ଏଥିରେ ତା'ର ଦୋଷ କ'ଣ ? ସେଥିପାଇଁ ନିଃସଙ୍କୋଚ ଭାବରେ ସେ ତା' ଉପରେ ଆଉଜି ପଡ଼ି, ତାକୁ ଅତି ନିଜର ପରି ପଚାରିଲା, "କି, କ'ଣ ହେଲାକି" ଆଉ ଫୁଲ ଦେଇସାରି ସେ ଯେଉଁ ପ୍ରତିଦାନର ଆଶା କରି ଛିଡ଼ା ହୋଇଥିଲା, ତା' ନପାଇ ସେ ଯେଉଁ ଦୁଃଖ ପାଇଲା, ତା'ର ଏହି" "ମୁଁ ତମର କି ଆଉ କାର" କଥା ପଦକରୁ ବେଶ୍ ବୁଝିହେଉଛି ।

ଏହି କଥା ଭାବୁ ଭାବୁ ଶୁଭେନ୍ଦ୍ର ଚମକିପଡ଼ିଲା, ତା'ର ଅନ୍ତରପ୍ରଦେଶରୁ କିଏ କହିଉଠିଲା, "ସେ ତ ତୋ'ରି, ଆଉ କା'ର ନୁହେଁ ।" ଶୁଭେନ୍ଦ୍ର ମୁହୂର୍ତ୍ତକ ପାଇଁ ବିମୂଢ଼ ହୋଇଗଲା ପରେ ଭାବିଲା–

"ଏ ତା'ର ଦୁର୍ବଳତା, ସେ କାହିଁକି ତା'ର ହେବ !"

ଶୁଭେନ୍ଦ୍ର ପୁଷ୍ପର ପ୍ରତ୍ୟେକ ଦିନର କଥା ଆଉ କାର୍ଯ୍ୟ ଗୋଟିଗୋଟି କରି ମନେମନେ ଭାବିନେଲା । ପୁଷ୍ପ ଏ ପର୍ଯ୍ୟନ୍ତ ଯାହା କରିଛି, ସବୁ ତା'ର ପତ୍ନୀ ଭାବରେ ହିଁ କରିଛି । ତାକୁ ତା' ସ୍ୱାମୀ ଆଖିରେ ହିଁ ଦେଖିଆସିଛି । ସେ ତାକୁ ବର୍ତ୍ତମାନ କିପରି ଏଡ଼େ ଅପ୍ରିୟ କଥା କହି ତା' ମନରେ ଏତେବଡ଼ ଗୁରୁତର ଆଘାତ ଦେବ ? ହୁଏତ ଏହି ଭୟଙ୍କର ଅପ୍ରୀତିକର ସମ୍ବାଦରେ ହଠାତ୍ ତା'ର କୋମଳ ହୃଦୟ ଫାଟି ଯାଇପାରେ । ସେ ଚିରଦିନ ପାଇଁ...

ଶୁଭେନ୍ଦ୍ର ଆଉ ଭାବିପାରିଲା ନାହିଁ; କିନ୍ତୁ ତଥାପି ଯେ ତାକୁ କହିବାକୁ ହେବ । ତା ନହେଲେ ଦିନୁଦିନ ତା'ର ଦୋଷ ବଢ଼ିଯାଉଛି । ତାକୁ ଏ ପର୍ଯ୍ୟନ୍ତ ନ ଜଣାଇ ସେ ଯେତେ ପାପ ଅର୍ଜନ କଲାଣି, ସେତିକି ପାପର ଫଳରେ ତାକୁ ଜୀବନଯାକ କାନ୍ଦିବାକୁ ପଡ଼ିବ । ଆଉ ସେ ଗୋପନ କରି ରଖିପାରିବ ନାହିଁ । ନିଶ୍ଚୟ ଜଣାଇଦେବ । ସେଥିରେ ପୁଷ୍ପର ଯାହା ଘଟୁ । ଦିନେ ତ ନିଶ୍ଚୟ ସେ ଜାଣିବ ।

ଶୁଭେନ୍ଦ୍ର ଖଟ ଉପରୁ ଉଠିଆସି ଖଣ୍ଡେ ଚେୟାର ଟାଣି ନେଇ ବସିପଡ଼ିଲା । ପୁଣି ଭାବିଲା–

"ଘଟଣାଟି ଶୁଣିସାରିଲା ପରେ ପୁଷ୍ପର ଅବସ୍ଥା କ'ଣ ହେବ ?"

ଶୁଭେନ୍ଦ୍ରର ମାନସପଟରେ ଚଳଚ୍ଚିତ୍ର ପରି ପୁଷ୍ପର କେତେ ମର୍ମାନ୍ତିକ କରୁଣ ଦୃଶ୍ୟ ଭାସିଉଠିଲା । ସେ ଭୟରେ ଆଖି ବୁଜିଦେଲା । ହୃଦୟ ତା'ର ଥରିଉଠିଲା ।

କ୍ଷଣକ ପରେ ପୁଣି ତା'ର ମନେହେଲା, ସେ ନିଜେ ତାହା ସହିପାରିବ ତ ? ଯା'ର ଅପରିଚିତ ଶବକୁ ନଈବାଲିରେ, ହୀନ ଭାବରେ ପଡ଼ିବାର ଦେଖି ସେ ବ୍ୟାକୁଳ

ହୋଇଉଠିଥିଲା, ତାକୁ ଜୀବନ୍ତରେ ସେ ଏତେ କଷ୍ଟ ଦେଇପାରିବ ତ ? ଯା'ର କଷ୍ଟ କଥା ଭାବି, ନିଜେ ସେହି କଷ୍ଟ ଅନୁଭବ କରି, ତା' ଆଖିରେ ଲୁହ ଉଛୁଳି ଆସେ, ତା'ର କଷ୍ଟ ସେ ନିଜେ ଚେତନା ଥାଉଁଥାଉଁ ଦେଖିପାରିବ ତ ? ଯା'ର ମୁହଁରେ ଈଷତ୍ ଭାବନାର ଛାୟା ଦେଖିଲେ ତା'ର ହୃଦୟ ଆନ୍ଦୋଳିତ ହୁଏ, ତା'ର ବିଷଣ୍ଣ ପାଣ୍ଡୁର ମୁଖ ନିଜ ଆଖିରେ ଦେଖିପାରିବ ତ ? ଯେଉଁ ଆଖିର ସଜଳତା ଦେଖିଲେ ତା'ର ଲୋତକପାତ ହୁଏ, ସେହି ଆଖିର ଅଶ୍ରୁନିର୍ଝର ଦେଖିବାକୁ ତା'ର ଛାତିରେ ଦମ୍ଭ ଅଛି ତ ?

ଏହି କଥା ଭାବୁଭାବୁ ଆଖି ତା'ର ଅଶ୍ରୁସଜଳ ହୋଇଆସିଲା । ସେ ଆଉ ଭାବିପାରିଲା ନାହିଁ । ଯାହା ଘଟୁ ପଛକେ, ସେ କେବେହେଁ ପୁଷ୍ପକୁ ଏ କଥା କହିପାରିବ ନାହିଁ । ତା'ର ନିଜ ଜୀବନ ବିନିମୟରେ ଯାହା ସେ ଲାଭ କରୁଛି, ସେହି ତା'ର ଅତିପ୍ରିୟ ବସ୍ତୁଟିକୁ ସେ ପକାଇ ଦେଇପାରିବ ନାହିଁ । ତା'ହେଲେ ତା'ର ଏତେ ସାଧନାର କି ଫଳ ହେଲା ? ନିଜ ହସ୍ତରେ ରୋପିତ ବିଷବୃକ୍ଷଟିକୁ ମଧ୍ୟ ନିଜେ ଛେଦନ କରନ୍ତି ନାହିଁ । ସେ କିପରି ନିଜେ ଜୀବନ ଦେଇ, ପୁଣି ତାହା ବିନାଶ କରିବ ?

ଶୁଭେନ୍ଦ୍ର ଏହି ଘୋର ଆବର୍ତ୍ତନ ମଧ୍ୟରେ ପଡ଼ି ଛଟପଟ ହେବାକୁ ଲାଗିଲା । ତା'ର ସଦା-ପ୍ରଫୁଲ୍ଲ ମୁଖମଣ୍ଡଳକୁ ଆଷାଢ଼ର ମେଘମାଳ ସଦୃଶ, ଅନୁକୂଳ-ପ୍ରତିକୂଳ ବାୟୁ ସାହାଯ୍ୟରେ କେତେବେଳେ କେଉଁ ଚିନ୍ତା ଆସି ଆବୃତ କରିଦେଲା, ସେ ନିଜେ ଏ କଥା ଧରିପାରିଲା ନାହିଁ ।

ଏହି ସମୟରେ ପୁଷ୍ପ ମୃଦୁମୃଦୁ ହସିହସି ଗୃହ ଭିତରେ ପ୍ରବେଶ କରି ଶୁଭେନ୍ଦ୍ରକୁ ଚାହିଁ ଦେଲାକ୍ଷଣି ଆଶଙ୍କାରେ ତା' ମୁହଁ ବିବର୍ଣ୍ଣ ହୋଇଗଲା । କେତେକଥା ମନେପଡ଼ି, ତା'ର ଅନ୍ତର ଭିତର କାନ୍ଦିଉଠିଲା । ସେ ବହୁ କଷ୍ଟରେ ନିଜକୁ ସମ୍ଭାଳି ନେଇ ଶୁଭେନ୍ଦ୍ରକୁ ଭୟମିଶ୍ରିତ କରୁଣ କଣ୍ଠରେ ପଚାରିଲା–

"ତମ ଦେହ କ'ଣ ଖରାପ ଲାଗୁଛି ?"

ଶୁଭେନ୍ଦ୍ର ପୁଷ୍ପର ଆଗମନ ଲକ୍ଷ୍ୟ କରିପାରି ନଥିଲା । ହଠାତ୍ ନିଜକୁ ବଦଳାଇ ପାରିଲା ନାହିଁ ସେ, ପୁଷ୍ପକୁ ଚାହିଁଦେଇ ଅନୁମାନ କଲା ଯେ ସର୍ବନାଶ ହୋଇଛି, ପୁଷ୍ପ ବୋଧହୁଏ ତା' ମନୋଭାବ ବୁଝିପାରିଛି । ସେ ଆଉ ତାକୁ ଲୁଚାଇ ରଖି ପାରିବ ନାହିଁ । ମୁହଁ ତଳକୁ କରି; କିଛି ସମୟ ମୌନ ରହି, ବହୁ କଷ୍ଟରେ ଈଷତ୍ ହର୍ଷରେଖା ମୁହଁରେ ଫୁଟାଇ, କିଞ୍ଚିତ୍ କ୍ଳାନ୍ତ ଭାବରେ ପୁଷ୍ପକୁ କହିଲା–

"ନାହିଁ, ମୋ' ଦେହ କିଛି ଖରାପ ଲାଗୁନାହିଁ, ତେବେ ମନ ଟିକେ ଭଲ ନାହିଁ । ତମେ କିଛି ଖରାପ ଆଶଙ୍କା କରନାହିଁ । ମୁଁ ମନେମନେ କୌଣସି ବିଷୟ ଆଲୋଚନା କଲେ ଏମିତି ଟିକେ ଦୁର୍ବଳ ଦେଖାଯାଏ ।"

ପୁଷ୍ପ ବୁଝିପାରି ଚୁପ୍ ରହିଲା ।

ଶୁଭେନ୍ଦୁ କିଛି ସମୟ କଣ ଭାବି, ଆହୁରି ଟିକେ ବେଶି ଭାବରେ ପ୍ରଫୁଲ୍ଲିତ ହେବାକୁ ଚେଷ୍ଟାକରି, ମୃଦୁହାସ୍ୟ ସହିତ ସ୍ନେହାର୍ଦ୍ର କଣ୍ଠରେ କହିଲା–

"ପୁଷ୍ପ ।"

ପୁଷ୍ପ ଶୁଭେନ୍ଦ୍ରକୁ ଲାଗିକରି ଛିଡ଼ାହେଲା ।

ଶୁଭେନ୍ଦ୍ର ତା' ହାତକୁ ନିଜ ହାତ ଭିତରେ ଧରି କହିଲା–

"ପୁଷ୍ପରାଣୀ ! ମୋର ଗୋଟିଏ କଥା ରଖିବ ?"

ପୁଷ୍ପ କିଛି ବୁଝିପାରିଲା ନାହିଁ, ମନେମନେ ଭାବିଲା–

ମୁଁ ଯେ ଦାସୀ, ମୋ' ପ୍ରତି ଏପରି ପ୍ରଶ୍ନ ତ ଆଦୌ ସଙ୍ଗତ ନୁହେଁ । ସେ ପ୍ରକାଶ୍ୟରେ କିଛି କହିଲା ନାହିଁ । କେବଳ ଶୁଭେନ୍ଦ୍ରକୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁରହିଲା ।

ଶୁଭେନ୍ଦ୍ର ସେହିପରି ଭାବରେ ପୁଣି ପଚାରିଲା–

"ରଖିବ ? କୁହ ।" ଏହା କହି ପୁଷ୍ପର ମୁହଁକୁ ଚାହିଁରହିଲା ।

ପୁଷ୍ପ ବିସ୍ମିତ ହୋଇ ମନେମନେ କ'ଣ ଭାବି ବିନୀତ ସ୍ୱରରେ କହିଲା–

"ତମର ସେବା କରିବାକୁ ଯଦି ମୋତେ ବାରଣ କରିବାକୁ ଥାଏ, କେବଳ ସେହି କଥାଟି ରଖିପାରିବି ନାହିଁ ।"

ଶୁଭେନ୍ଦ୍ର କିଛି ସମୟ ମୌନ ରହି, ପୁଣି ଧୀର ସହଜଭାବରେ କହିଲା–

"ନାହିଁ, ମୋର କେବଳ ଏତିକି ମାତ୍ର ପ୍ରାର୍ଥନା, ତମେ କେବେହେଁ କୌଣସି କାରଣରୁ ହେଲେ ତମ ମୁହଁ ଉପରେ ଭାବନାର ଛାଇ ପକାଇବ ନାହିଁ ।"

ଶୁଭେନ୍ଦ୍ର ପୁଷ୍ପ ମୁହଁକୁ ଚାହିଁ ନିଜ ମୁହଁରେ ହର୍ଷରେଖା ଟାଣିଆଣିଲା ।

ପୁଷ୍ପ କଥାଟିର ମର୍ମ ଭଲଭାବରେ ହୃଦୟଙ୍ଗମ କରି, ହର୍ଷ-ବିସ୍ମୟର ଉତ୍‌ଫୁଲ୍ଲ ଆଖିରେ ଶୁଭେନ୍ଦ୍ରର ମୁହଁକୁ ଚାହିଁ ମନେମନେ ଭାବିଲା–

ମନୁଷ୍ୟ ମନୁଷ୍ୟକୁ ଏତେ ଭଲପାଇପାରେ !

ଏହିପରି ପରିସ୍ଥିତି ଭିତରେ କେତୋଟି ଦିନ କଟିଗଲା ।

କିନ୍ତୁ ଶୁଭେନ୍ଦ୍ରର କୌଣସି ପରିବର୍ତ୍ତନ ହେଲାନାହିଁ । ବରଂଚ ଦିନକୁ ଦିନ ତା'ର ଚିନ୍ତା ଗଭୀରରୁ ଗଭୀରତର ହେବାକୁ ଲାଗିଲା ।

ସେ ମନ ଭିତରେ ଯାହା ଭାବୁ ପଦାକୁ ଯେପରି କିଛି ପ୍ରକାଶ ନ ପାଏ, ସେଥିପାଇଁ ଖୁବ୍ ସତର୍କ ଥିଲା । ସେ ସାଧାରଣତଃ ଯେତେ ନ ହସେ, ତା ଅପେକ୍ଷା ବେଶି ହସିବାକୁ ଚେଷ୍ଟା କରେ । ଆଉ ସର୍ବଦା ଫୂର୍ତ୍ତି ରହେ । କେତେବେଳେ ଗୀତ ଗାଇବା, କେତେବେଳେ ମିନି ସାଙ୍ଗରେ ଖେଳିବା ଆଉ କେତେବେଳେ ପୁଷ୍ପକୁ ତା' ସହିତ ତର୍କବିତର୍କ କରିବାକୁ ଶିଖାଇବାରେ ସେ ସର୍ବଦା ନିଜକୁ ବ୍ୟସ୍ତ ରଖୁଥିଲା । ତଥାପି ସେ ତା'ର ଭାବନାକୁ ଲୁଚାଇ ରଖିପାରିଲା ନାହିଁ । ଚିରସ୍ଥାୟୀ ଚିନ୍ତା ମନର ଭିତର ଉପରେ ପଦାକୁ ଆତ୍ମପ୍ରକାଶ କଲା । ତା'ର ସୁଗୌର କାନ୍ତି କ୍ରମେ ମଳିନ ନିଷ୍ପ୍ରଭ ଦେଖାଗଲା । ସୁଚିକ୍କଣ ମୁଖମଣ୍ଡଳରେ ଈଷତ୍ ଜଟିଳ ରେଖାର ଆଭାସ ମିଳିଲା ।

ନଅ

ପୁଷ୍ପ ଏସବୁ ଦେଖେ, ଭାବେ, କିନ୍ତୁ କିଛି ବୁଝିପାରେ ନାହିଁ । ମନେ ମନେ ଶଙ୍କିତ ହୋଇ ରହେ । ଶୁଭେନ୍ଦ୍ର ସଙ୍ଗରେ କଥା କହିଲାବେଳେ ଅତି ସତର୍କତା ସହିତ କହେ—ତର୍କବିତର୍କ କରେ । ଶୁଭେନ୍ଦ୍ର ତାକୁ ଯାହା ବୁଝାଇଦିଏ, ସବୁ ଶୁଣେ; କିନ୍ତୁ କୌଣସିଟିରେ ସେ ମନ ଦେଇପାରେ ନାହିଁ । ତା'ର ଭିତରର ଚେତନା ବରାବର ଶୁଭେନ୍ଦ୍ରର ଅସତର୍କ ଅନ୍ୟମନସ୍କତା ଲକ୍ଷ୍ୟ ରଖିଥାଏ । କେତେବେଳେ ସୁବିଧା ପାଇଲେ ବସି ଭାବେ । ଶୁଭେନ୍ଦ୍ରର ଏ ଚିନ୍ତା-ଭାବନା ବୋଧହୁଏ ତା'ରି ପାଇଁ । ତା'ର ହୀନକପାଳ ଦୋଷରୁ ତାଙ୍କର ଏହି ଦଶା; ନ ହେଲେ ତାଙ୍କର ଆଉ କି ଅଭାବ ! ତା'ର ବିଗତ ଜୀବନର ବହୁତ କଥା ମନେପଡ଼େ । ସେ ନିଜକୁ ଅଲକ୍ଷଣୀ ବୋଲି ଶତଭାବରେ ଧିକ୍କାର କରେ । ରାତିଯାକ କେବଳ ତା'ର ଏହି ଭାବନା । ତାକୁ ନିଦ ହୁଏନାହିଁ । କାନ୍ଦିକାନ୍ଦି ତକିଆ ତିନ୍ତିଯାଏ ।

ପୁଷ୍ପର ଏହି କଥା ଦିନେ ଶୁଭେନ୍ଦ୍ରର ଆଖିରେ ପଡ଼ିଲା । ସେ ପଚାରିଲା—

"ଏ କ'ଣ, ଆଖି ଫୁଲିଛି କାହିଁକି ? ତମେ କାନ୍ଦୁଥିଲ କି ?"

ପୁଷ୍ପ ହସିହସି ଉତ୍ତର ଦେଲା—

"ନାହିଁ, ମୁଁ କାହିଁକି କାନ୍ଦିବି ! ତମେ ଯେଉଁଠି ଅଛ, ମୋର ଆଉ ଅଭାବ କ'ଣ, ଚିନ୍ତା କ'ଣ ଯେ ମୁଁ କାନ୍ଦିବି ?"

କହିସାରି ପୁଷ୍ପ କାରୁଣ୍ୟର କୃତ୍ରିମ ପ୍ରସନ୍ନତା ମୁହଁରେ ଖେଳାଇ ଶୁଭେନ୍ଦ୍ରକୁ ଚାହିଁଲା ।

ଶୁଭେନ୍ଦ୍ର ପୁଷ୍ପକୁ ଚାହିଁନପାରି କାର୍ଯ୍ୟଛଳନାରେ ଅନ୍ୟଆଡ଼େ ଚାଲିଗଲା ।

ଏହିପରି ଉଭୟେ ପରସ୍ପର ପ୍ରତି ସତର୍କ ରହିଲେ ମଧ୍ୟ ଅଳ୍ପଦିନ ଭିତରେ ଶୁଭେନ୍ଦ୍ରର ଅବସ୍ଥା ବେଶି ଖରାପ ହୋଇପଡ଼ିଲା ।

ଶୁଭେନ୍ଦ୍ରର ଏପରି ଅବସ୍ଥା ଦେଖି ପୁଷ୍ପ ଯଥାସାଧ୍ୟ ଚେଷ୍ଟା କରି ମଧ୍ୟ ଆଉ ବେଶିଦିନ ଧୈର୍ଯ୍ୟଧରି ରହିପାରିଲା ନାହିଁ । ଦିନେ ଶୁଭେନ୍ଦ୍ର ଶୋଇଥିବା ବେଳେ ପଙ୍ଖା କରୁ କରୁ ମୃଦୁସ୍ୱରରେ କାନ୍ଦିଉଠିଲା ।

ଶୁଭେନ୍ଦ୍ର ହତବୁଦ୍ଧି ହୋଇ ପୁଷ୍ପକୁ ଚାହିଁଲା ।

ପୁଷ୍ପ ତଳକୁ ମୁହଁ କରିଥିଲା, ଜାଣିପାରିଲା ନାହିଁ ।

ଶୁଭେନ୍ଦ୍ର ତା' ବାହୁକୁ ହଲାଇଦେଇ ସହାନୁଭୂତିପୂର୍ଣ୍ଣ ବ୍ୟାକୁଳ ଭାବରେ ଡାକିଲା–

"ପୁଷ୍ପ !"

ହଲିଯିବା ଦ୍ୱାରା ପୁଷ୍ପର ଗଚ୍ଛିତ ଅଶ୍ରୁ ଯେପରି ଶ୍ରାବଣର ମୂଷଳ ଧାରା ପରି ତଳକୁ ଅଜାଡ଼ି ହୋଇ ପଡ଼ିଲା । ସେ ଉଚ୍ଚସ୍ୱରରେ କଇଁକଇଁ ହୋଇ କାନ୍ଦି ଶୁଭେନ୍ଦ୍ରର ଛାତି ଉପରେ ଆଉଜିପଡ଼ିଲା ।

ଶୁଭେନ୍ଦ୍ର ଧୀରେ ଉଠିବସି, ପୁଷ୍ପକୁ ଦୁଇ ହାତରେ ଧରିପକାଇ ଅତି ବ୍ୟଗ୍ର ଓ ଅଧୀର ହୋଇ କହିଲା–

"ପୁଷ୍ପ ପୁଷ୍ପ, ଏ କ'ଣ ! କାନ୍ଦୁଛ କାହିଁକି ?"

ପୁଷ୍ପ ସେହିପରି କାନ୍ଦିକାନ୍ଦି ଶୁଭେନ୍ଦ୍ରର ଛାତି ଉପରେ ମୁଣ୍ଡ ରଖି ରୁଦ୍ଧ ଆକୁଳ କଣ୍ଠରେ କହିଲା–

"ତମେ କାହିଁକି ଏମିତି ହୋଇଯାଉଛ ?"

ଶୁଭେନ୍ଦ୍ର କିଛି ନ ହେଲାପରି, ନିର୍ଜୀବ ଶୁଷ୍କହାସ୍ୟର ସହିତ ପୁଷ୍ପକୁ ଦୁଇ ହାତରେ ଛାତି ଉପରେ ଜାକିଧରି ସ୍ନେହଜର୍ଜରିତ ସ୍ୱରରେ କହିଲା–

"ପାଗଳ ନା କଣ, ମୁଁ କାହିଁକି କ'ଣ ହୋଇଚି ?"

ଏଥିମଧ୍ୟରେ ପୁଷ୍ପ ମନସ୍ତାପ ଓ ଅନାହାରରେ ଅତ୍ୟନ୍ତ ଶୀର୍ଣ୍ଣ ଦୁର୍ବଳ ହୋଇ ପଡ଼ିଥିଲା । ପ୍ରାୟ ପଦେ କଥା କହିବା ଭଳି ଶକ୍ତି ତା'ର ନଥିଲା । ସେ ପ୍ରାୟ ତା'ର

ସଂଜ୍ଞାଲୋପ ହେଲା ଭଳି ଅବସ୍ଥାରେ ଥିଲା; କିନ୍ତୁ ବର୍ତ୍ତମାନ ସେ ତା'ର ରମଣୀଦେହରେ ପ୍ରଥମ ପୁରୁଷର ସ୍ପର୍ଶ—ତା'ର ସୁଦୀର୍ଘ ଆକାଂକ୍ଷିତ ପରମ କାମ୍ୟ ଆରାଧ୍ୟଦେବତାର ଛାତି ଉପରେ, ତା'ରି ବାହୁବନ୍ଧନ ଭିତରେ ଲାଭକରି, ଆନନ୍ଦର ସୀମା ରହିଲା ନାହିଁ । ସେହି ଘୋର ଦୁର୍ବଳତା ମଧ୍ୟରେ ମଧ୍ୟ ସେ ଯେପରି ପୂର୍ଣ୍ଣ ସୁସ୍ଥ ସବଳ ବୋଲି ବୋଧ କରି ଶୁଭେନ୍ଦ୍ରକୁ ଆହୁରି ଜୋର୍‌ରେ କୁଣ୍ଢାଇଧରି, ତା' ମୁହଁ ନିକଟକୁ ମୁହଁ ନେଇ କାନ୍ଦୁକାନ୍ଦୁ କହିଲା–

"ତମେ ଯେ କ'ଣ ଭାବିଭାବି ସତ ପାଗଳ ହୋଇଗଲଣି । ହେଇ, ଦେହକୁ ଦେଖିଲ କିପରି ଶୁଖିଗଲାଣି ! କୁହ, ସତ କୁହ, ମତେ କିଛି ଲୁଚାଅ ନାହିଁ, ତମର କ'ଣ ହୋଇଛି, ତମେ କ'ଣ ଭାବୁଛ ଏତେ ?"

ପୁଷ୍ପକୁ କୌଣସି କଥା ଲୁଚାଇବାକୁ ସାହସ ଆଉ ଶୁଭେନ୍ଦ୍ରର ନଥିଲା । ନିଜ ଭିତରେ କଥାଟାକୁ ଘପିଘପି ତା'ର ଅନ୍ତର ଭିତରେ ଯେଉଁ ଦୁର୍ବିସହ ଯାତନାର ବାଷ୍ପ ଘୂରିଘୂରି ପଦାକୁ ବାହାରିପଡ଼ିବାର ପଥ ଖୋଜିବୁଲୁଥିଲା, ପୁଷ୍ପର ଏ କଥାରେ ପଥର ସନ୍ଧାନ ପାଇ, ତାହା ଶୁଭେନ୍ଦ୍ରର କଣ୍ଠ ନିକଟ ଆସି ବାହାରି ପଡ଼ିବାକୁ ଉଦ୍ୟତ ହେଲା । ଶୁଭେନ୍ଦ୍ର ଏ ଉତ୍ତେଜନା କିଞ୍ଚିତ ଦମନ କରି ପୁଷ୍ପର ମୁଣ୍ଡରେ ହାତ ବୁଲାଇ, ତା' ବେକରୁ ପୁଷ୍ପର ହାତ ଛଡ଼ାଇଦେବାକୁ ଯାଇ ଦେଖିଲା—ପୁଷ୍ପର ହାତ ଜାବପଡ଼ିଯାଇଛି । ସେ ମୂର୍ଚ୍ଛିତ ହୋଇ ତା' ଛାତି ଉପରେ ଢଳିପଡ଼ିଛି ।

ଶୁଭେନ୍ଦ୍ରର ମନର ଅବସ୍ଥା ଯେ କ'ଣ ହେଲା, ସେକଥା ଅନୁମାନର ବାହାରେ । ସେ ଉଚ୍ଚସ୍ୱରରେ ଚିତ୍କାର କରିଉଠିଲା–

"ମିନି ମିନି !"

ମିନି ପାଖଘରେ ଥିଲା, ଦୌଡ଼ି ଆସି ଦେଖି କିଛି ବୁଝିନପାରି କହିଲା–

"କାହିଁକି ଡାକୁଚ, ନନା ! ନୂଆବୋଉଙ୍କୁ କହୁନା ଖାଇବାକୁ, ସେ ତିନି ଚାରିଦିନ ହେଲା କିଛି ଖାଉନାହାନ୍ତି । କହିଲାଠୁଁ କହୁଛନ୍ତି, ମତେ ଭୋକ କରୁନାହିଁ ।"

ପୁଷ୍ପର ଏ ଅବସ୍ଥା ଦେଖି ଶୁଭେନ୍ଦ୍ରର ବୁଦ୍ଧି ଲୋପ ହୋଇଯାଇଥିଲା । ମିନିର କଥା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲା–

"କ'ଣ, ତିନି ଚାରିଦିନ ହେଲା ଖାଉନାହାନ୍ତି, ତୁ ମତେ ଏକଥା କହିଲୁ ନାହିଁ ? ହଉ, ସେ ସିରପ୍ ବୋତଲଟା ଆସ୍ତେ ଆଣିଲୁ, ସେଠୁ ସେ ଚାମଚ୍‌ଟା ବି ଆଣ୍ ।"

ଶୁଭେନ୍ଦ୍ର ବହୁ ଯତ୍ନର ସହିତ ପୁଷ୍ପର ହାତକୁ ନିଜ ଗଳାଦେଶରୁ ଉନ୍ମୁକ୍ତ କରି ତାକୁ ବିଛଣା ଉପରେ ଧୀରେ ଶୁଆଇଦେଇ ଋମଚ ସାହାଯ୍ୟରେ ଅଳ୍ପଅଳ୍ପ କରି ତା' ପାଟିରେ ସିରପ୍ ଦେବାକୁ ଲାଗିଲା ।

ମିନି କିଛି ବୁଝି ନପାରୁଥିଲେ ହେଁ, କେବଳ ଏତିକି ବୁଝିଥିଲା ଯେ ତା'ର ଅତି ପ୍ରିୟ ନୂଆବୋଉ ଉପରେ କିଛି ଗୋଟାଏ ଅସ୍ୱସ୍ତିକର ଘଟଣା ଘଟିଯାଇଛି । ସେଥିପାଇଁ ସେ ବ୍ୟାକୁଳ ଭାବରେ ପୁଷ୍ପକୁ ଋହିଁ ତା' ମନର ଶତ ଅବ୍ୟକ୍ତ ପ୍ରଶ୍ନର ଉତ୍ତର ପାଇଁ ଅସ୍ଥିର ହୋଇଉଠୁଥିଲା । ଶୁଭେନ୍ଦ୍ରକୁ ପଋରି ବୁଝିବାକୁ ତା'ର ତର ସହିଲା ନାହିଁ । ସେ ପୁଷ୍ପ ଦେହରେ ହାତ ଦେଇ, ହଲେଇହଲେଇ କାନ୍ଦକାନ୍ଦ ସ୍ୱରରେ ଡାକିଲା—

"ନୂଆବୋଉ, ନୂଆବୋଉ, ନୂଆବୋଉ ମ !"

ମିନି ଡାକରେ ପୁଷ୍ପର କୌଣସି ସୋରଶବ୍ଦ ନ ମିଳିବାରୁ, ଶୁଭେନ୍ଦ୍ର ଅତ୍ୟନ୍ତ ବ୍ୟଥିତ ହୋଇ ପୁଷ୍ପର ମୁହଁକୁ ଧରି, ତା'ର ଅନ୍ତରର ସମୁଦାୟ ସ୍ନେହସୋହାଗ ଏକତ୍ର କରି, ପୁଷ୍ପ ଭିତରେ ଯେପରି ତା'ର ନିଜର ଚେତନା ଢାଳିଦେଲା ପରି ବ୍ୟାକୁଳ କଣ୍ଠରେ ଡାକିଲା—

"ପୁଷ୍ପ, ପୁଷ୍ପ !"

ପୁଷ୍ପର ମୋହାଚ୍ଛନ୍ନ ଭାବ କ୍ରମେ କଟିଆସୁଥିଲା, ସେ ନିଜକୁ କିଞ୍ଚିତ୍ ସଂକୋଚ କରିବାକୁ ଚେଷ୍ଟା କଲା ।

ମିନି ଋମଚ ଧରି ଅଳ୍ପଅଳ୍ପ କରି ପୁଷ୍ପର ପାଟିରେ ସିରପ୍ ଦେଲା ।

କେତେ ସମୟ ପରେ ପୁଷ୍ପ କର ଲେଉଟାଇବାକୁ ଚେଷ୍ଟା କରୁକରୁ ହଠାତ୍ ଋହିଁଦେଇ ଉଠିବାକୁ ଉଦ୍ୟତ ହେଲା ।

ଶୁଭେନ୍ଦ୍ର ତାକୁ ପଙ୍ଖା କରୁକରୁ କିଛି ନ କହି ହସ୍ତସଙ୍କେତରେ ଶୋଇରହିବାକୁ ଇଙ୍ଗିତ କଲା; କିନ୍ତୁ ପୁଷ୍ପ ଉଠିବସିଲା । ଘଟଣାଟି ବୁଝିବା ତାର ବାକି ରହିଲା ନାହିଁ ।

ମିନି ତା' ମୁହଁକୁ ଋହିଁ ହସିଦେଇ କହିଲା—

"ଉଁ ଉଁ—ନ ଖାଇ କରି ଆସି ଏଠି ଶୋଇପଡ଼ିଛନ୍ତି ବାବୁ ! ନ ଖା' କା'ର କଣ ଯିବ କି, ଆପଣାକୁ ତ ଭୋକ କରିବ ।"

ମିନି କଥାରେ ଉଭୟଙ୍କର ହାସ୍ୟର ଉଦ୍ରେକ ହେଲେହେଁ ପୁଷ୍ପ ଖଟରୁ ତଳକୁ ଓହ୍ଲାଇଆସି ଲଜ୍ଜାରେ ଈଷତ୍ ମୁଖାବନତ କରି ମୃଦୁ ସ୍ୱରରେ ଶୁଭେନ୍ଦ୍ରକୁ ଋହିଁ କହିଲା—

"ଆହୁରି କ'ଣ ବୁଝିବାକୁ ବାକି ଅଛି !"

ଏହା କହି ମିନିକୁ ସାଙ୍ଗରେ ଧରି ସେଠାରୁ ପଳାଇଗଲା ।

## ଦଶ

ଏହି ଘଟଣା ପରେ ଶୁଭେନ୍ଦ୍ରର ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଯାଇଛି । ସେ ଭାବି ଠିକ୍ କରିଛି ଯେ ପୁଷ୍ପକୁ ସତ୍ୟ କଥାଟି ଜଣାଇଦେବ । ନଚେତ୍ ଉଭୟଙ୍କ ମଧ୍ୟରେ ଏ ଯେଉଁ ଘାତପ୍ରତିଘାତର ଲୀଳା, ଆଉ ସ୍ୱାମୀ-ସ୍ତ୍ରୀ ଭାବ କ୍ରମଶଃ ବର୍ଦ୍ଧିତ ହେଉଛି, ଶେଷରେ ତା'ର ଫଳ ବଡ଼ ବିଷମୟ ହୋଇଉଠିବ । ପୁଷ୍ପର ତ କିଛି ସନ୍ଦେହ ନାହିଁ କିନ୍ତୁ ଶୁଭେନ୍ଦ୍ରର ଅଜ୍ଞାନରେ ଏହି ଜିନିଷଟି କ୍ରମେ ତା' ମଧ୍ୟରେ ପ୍ରବେଶ କରିବାକୁ ଯତ୍ନ କରୁଛି ।

ଏହି କେତେଦିନ ମଧ୍ୟରେ ଶୁଭେନ୍ଦ୍ରର ଚେହେରା ପୂର୍ବପରି ହୋଇଯାଇଛି । ସେ ଆଉ କିଛି ଭାବୁନାହିଁ–କେବଳ କେତେବେଳେ ସୁବିଧା ପାଇଲେ ପୁଷ୍ପକୁ କହିବ, ଏହି ଅପେକ୍ଷାରେ ଅଛି ।

ଶୁଭେନ୍ଦ୍ରକୁ ପୁଣି ପୂର୍ବାବସ୍ଥାକୁ ଫେରିଆସିବାର ଦେଖି, ପୁଷ୍ପର ମନ ମଧ୍ୟ ବଦଳିଯାଇଛି । ଉଭୟଙ୍କର ଦେଖା ହେଲାକ୍ଷଣି ଉଭୟେ ହସିଉଠୁଛନ୍ତି; କିନ୍ତୁ କେହି କାହାରିକୁ କିଛି କହୁନାହାନ୍ତି ।

ଶୁଭେନ୍ଦ୍ର କେତେଥର ପୁଷ୍ପକୁ ଧରି କ'ଣ କହିବାକୁ ଉଦ୍ୟତ ହୋଇଛି, କିନ୍ତୁ ପୁଷ୍ପ ହାତ ଛଡ଼ାଇନେଇ, 'ନାଇଁ ମୁଁ କିଛି ଶୁଣିପାରିବି ନାହିଁ' କହି ସେଠାରୁ ଖସି ଚାଲିଯାଇଛି ।

ଦିନେ ପୁଷ୍ପ ବିଛଣାରେ ଶୋଇ ଖଣ୍ଡେ ଗପବହି ପଢ଼ୁଛି, ରାତି ପ୍ରାୟ ସାଢ଼େ ବାରଟା ହେବ । ମିନି ଶୋଇପଡ଼ିଛି । ଶୁଭେନ୍ଦ୍ର ଧୀରେ ଘର ଭିତରେ ପ୍ରବେଶ କରି ପୁଷ୍ପର ଖଟକୁ ଆଉଜି ଛିଡ଼ା ହୋଇଗଲା । ଖଟ ହଲିଯିବାରୁ ପୁଷ୍ପ ଚାହିଁ ଦେଖିଲା, ଶୁଭେନ୍ଦ୍ର ।

ଶୁଭେନ୍ଦ୍ର କେବେ ଏତେ ରାତିରେ ଏ ଘରକୁ ଆସେ ନାହିଁ । ପୁଷ୍ପ ବିସ୍ମିତ ହୋଇ ଉଠିବସିଲା । ଶୁଭେନ୍ଦ୍ର ବସିପଡ଼ି ପୁଷ୍ପର ହାତଟିକୁ ସସ୍ନେହରେ ନିଜ ହାତ ଭିତରକୁ ନେଇ ଆଉଁଶୁଆଉଁଶୁ ସ୍ନେହାର୍ଦ୍ର କଣ୍ଠରେ କହିଲା–

"ଆସ, ସେ ଘରକୁ ଯିବା । ଭଲ ଲାଗୁନାହିଁ, କିଛି ଗପ କରିବା ।"

ପୁଷ୍ପ ଆବେଗଭରା ଦୃଷ୍ଟିରେ ସପ୍ରଶ୍ନ ଭାବରେ କିଛିକ୍ଷଣ ଶୁଭେନ୍ଦ୍ରକୁ ଚାହିଁ, କ'ଣ ଭାବି କହିଲା–

"ଏଇଠି ବସୁନା, ଏଠି କ'ଣ ଗପ କରି ହବ ନାହିଁ ? ଦେହ ଖରାପ ଲାଗୁଛି ? ଏଇଠି ଟିକେ ଶୋଇପଡ଼, ମୁଁ ମୋଡ଼ିଦିଏ । ମୋର ଅନେକ ସେବା କରିଛ । ମୁଁ ଦିନେ ହେଲେ..."

କଥା ନସୁରୁଣୁ ଶୁଭେନ୍ଦୁ କହିଉଠିଲା–

"ନାଇଁ, ମୋର ଦେହ କିଛି ଖରାପ ଲାଗୁନାହିଁ, ତେବେ..."

ଶୁଭେନ୍ଦୁର ଢ଼ଙ୍ଗ୍ ଦେଖି ପୁଷ୍ପ ହସି ଉଠି କହିଲା–

"ଆଉ ତେବେ କ'ଣ ?"

ଶୁଭେନ୍ଦୁ କିଛି ନ ଭାବି କ'ଣ କହୁକହୁ ତା' ମୁହଁରୁ ବାହାରିଗଲା–

"ଏଠି ମିନି ଶୋଇଛି, ଉଠିବ ।"

ଏକଥା ଶୁଣି ପୁଷ୍ପର ଦେହସାରା ଗୋଟାଏ ପୁଲକର ସ୍ପନ୍ଦନ ଖେଳିଗଲା । ସେ ଶିହରିଉଠିଲା।

ଭାବିଲା–

ଏତେଦିନେ ବୋଧହୁଏ ଭଗବାନ ଦୟା କଲେ । ତା'ର ନାରୀଜନମ ସାର୍ଥକ ହେଲା । ବହୁଦିନର ଆକାଂକ୍ଷା ଆଜି ବୋଧହୁଏ ପୂର୍ଣ୍ଣ ହେବ । ସେ ଆଉ ଶୁଭେନ୍ଦୁର ମୁହଁକୁ ଚାହିଁପାରିଲା ନାହିଁ । ଆଖିରେ ତା'ର ଅଶ୍ରୁବିନ୍ଦୁ ଜମିଆସିଲା । ମୁହଁ ତଳକୁ କରି, ସେ ପାଖରେ ପଡ଼ିଥିବା ଉନ୍ମୁକ୍ତ ଗପବହିଟିର ପତ୍ର ଉପରେ ଦୃଷ୍ଟି ନିବଦ୍ଧ କଲା । ଆଗରେ ଥୁଆହୋଇଥିବା ଆଲୋକର ରେଖା ପଡ଼ିଲା ତା'ର ଆନତ ମୁହଁରେ । ଜଣାଗଲା, ଆଲୋକର ସନ୍ଧାନ ପାଇ ସ୍ୱେଚ୍ଛାରେ ପଦ୍ମଫୁଲଟି ତା' ଆଡ଼କୁ ବୁଲିପଡ଼ିଛି ଯେପରି ।

ଶୁଭେନ୍ଦୁ ବିଭୋର ହୋଇ ଚାହିଁରହିଲା ସେହି ବ୍ରୀଡ଼ାନତ ମୁହଁକୁ ତା'ର । ତା'ର ସମସ୍ତ କଥା କେଉଁଆଡ଼େ ଉଭାଇଗଲା । ସେ ତା'ର ସମସ୍ତ ବୋଧଶକ୍ତି ହଜାଇଦେଲା ସେହି ମୁହଁରେ । ଜାଣିପାରିଲା ନାହିଁ, କେତେବେଳେ ତା'ର ହସ୍ତରୁ ପୁଷ୍ପର ହସ୍ତ ମୁକ୍ତ ହୋଇଯାଇଛି ।

ଜୀବନରେ ଏତେ ଆନନ୍ଦ ପୁଷ୍ପ କେବେ ହୋଇପାରିନଥିଲା । ସେ କେତେ କ୍ଷଣଯାଏ କିଛି କହିପାରିଲା ନାହିଁ । ବହୁ ଆୟାସରେ ନିଜକୁ ସହଜ ସଂଯତ କରି, ମୁଖ ଉତ୍ତୋଳନ କରି ଦେଖିଲା, ଶୁଭେନ୍ଦୁ ବିଭୋର ନୟନରେ ତା'ରି ଆଡ଼େ ଚାହିଁ ରହିଛି । ସେ ମୁଗ୍‌ଧ କୋମଳ ସ୍ୱରରେ ପଚାରିଲା–

"କଅଣ ଭାବୁଛ ?"

ମୁହୂର୍ତ୍ତକ ପରେ, କ'ଣ ଭାବି ଧୀରେଧୀରେ ଖଟ ଉପରୁ ଓହ୍ଲାଇ ତଳେ ସଲଜ୍ଜ ଭାବରେ ଛିଡ଼ା ହୋଇ ଶୁଭେନ୍ଦୁକୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲା । ଶୁଭେନ୍ଦୁ ଉଠି କଣ ଭାବି ଧୀରେ ଅଗ୍ରସର ହେଲା । ପୁଷ୍ପ ନୀରବରେ ତା'ରି ଅନୁଗମନ କଲା ।

ଶୁଭେନ୍ଦ୍ର ପୁଷ୍ପକୁ ଗୋଟିଏ ଚେୟାର ଆଗେଇଦେଇ, ନିଜେ ଗୋଟିକରେ ବସିପଡ଼ିଲା । ପୁଷ୍ପ ନ ବସି ଟେବୁଲକୁ ଆଉଜି ଛିଡ଼ାହୋଇରହିଲା ।

ମୁହୂର୍ତ୍ତିକ ପରେ ଶୁଭେନ୍ଦ୍ର ପୁଷ୍ପର ହାତ ଧରି କ'ଣ କହିବାକୁ ଉଦ୍ୟତ ହୋଇ କହି ନ ପାରି ଇତସ୍ତତଃ ହେଲା ।

ପୁଷ୍ପ ମନେମନେ ହସି, ଅନ୍ତରଙ୍ଗ ବନ୍ଧୁପରି ଶୁଭେନ୍ଦ୍ରର କାନ୍ଧରେ ହାତ ପକାଇ ପରିହାସରେ ପଚାରିଲା—

"ପୁଣି କିଛି ମନେପଡ଼ୁଛି ନା କ'ଣ ? ନିଦ ଲାଗିଲାଣି, ଆସ ଶୋଇବ । କାଲି ଦିନଯାକ ବସି ଗପିବା ।"

ଏହା କହି ଶୁଭେନ୍ଦ୍ର ହାତଟିକୁ ଧରି ବିଛଣା ଉପରକୁ ଘେନି, ଜୋର୍ କରି ତାକୁ ଶୁଆଇଦେଲା । ପାଖରେ ବସି, ଚଦରଟି ତା' ଉପରେ ପକାଇଦେଲାବେଳେ ଶୁଭେନ୍ଦ୍ର ତା' ହାତକୁ ଖୁବ୍ ଜୋର୍‌ରେ ଚିପିଧରିଲା ।

ଶୁଭେନ୍ଦ୍ରର ଏ ପ୍ରକାର ପାଗଳାମିରେ ପୁଷ୍ପ ମୃଦୁମୃଦୁ ହସି ହସି କହିଲା—

"ହାତ କବଜି ଯେ ମୋର ଭାଙ୍ଗିଯିବ ! ବେଦୀ ଉପରର ଓରିମାନଟା ଏମିତି ଭାବରେ ମେଣ୍ଟାଇନେଉଛ ପରା ? ମୋ' ହାତ ଛାଡ଼, ମୁଁ ଟିକିଏ ଘଷିଦିଏ ।"

ଶୁଭେନ୍ଦ୍ର ମନେମନେ ଅତ୍ୟନ୍ତ ସଙ୍କୁଚିତ ହୋଇ ତତ୍‌କ୍ଷଣାତ୍ ପୁଷ୍ପର ହାତ ଛାଡ଼ିଦେଲା ।

ପୁଷ୍ପ ଶୁଭେନ୍ଦ୍ରର ପାଦ ମୂଳକୁ ଘୁଞ୍ଚି ବସି ତା' ଭଣ୍ଡାରୁ ଲୁଗା ଖସାଇଦେଇ ହାତ ଦେଲାକ୍ଷଣି, ଶୁଭେନ୍ଦ୍ର ଗୋଡ଼ଟିକୁ ସଙ୍କୋଚ କରି ଘୁଞ୍ଚାଇ ନେବାକୁ ଚେଷ୍ଟା କଲା; କିନ୍ତୁ ପୁଷ୍ପ ଜୋର୍‌କରି ଧରି ଅଟକାଇଦେଲା ।

କିଛିକ୍ଷଣ ଉଭୟ ନିରବ ରହିଲା ପରେ ପୁଷ୍ପ ମୋଡ଼ିଦେଉଦେଉ ମନେମନେ ହସି, ପ୍ରକାଶ୍ୟରେ ପରିହାସ ସ୍ୱରରେ ଧୀରେଧୀରେ କହିଲା—

"ରାଗ କର ନାଇଁ । ଥରେ ମାତ୍ର ମୋର ଧର୍ମ ମୁଁ ପାଳନ କରେ । ତା' ପରେ ତମର ଯାହା ଇଚ୍ଛା ଭାଙ୍ଗ ବା ରଖ । ମୋର ଆଉ ଦୁଃଖ ରହିବ ନାହିଁ ଯେ ମୁଁ ତମର ପଦସେବା କରିନାହିଁ ବୋଲି ! ଏ ହାତ ଉପରେ ମୋର ତ କିଛି ଅଧିକାର ନାହିଁ, ଏ ହାତ ତ ତମର ।"

ଶୁଭେନ୍ଦ୍ର ପୁଷ୍ପ କଥାର ମର୍ମ ବୁଝିପାରି ବ୍ୟଥିତ ହେଲେହେଁ କଥାଟା କିପରି ଭାବରେ ପୁଷ୍ପ ଆଗରେ ପ୍ରକାଶ କରିବ ଭାବି ଠିକ୍ କରିପାରୁନଥିଲା । ଏହି କଥା ଭିତରେ ପ୍ରକାଶ କରିବା ପଥର ସନ୍ଧାନ ପାଇ ସେ ସହଜ ଭାବରେ କହିଲା—

"ମୁଁ ରାଗିଲି ବୋଲି କହୁଛ ? କିନ୍ତୁ ମୁଁ ବଞ୍ଚିଥିଲାଯାଏ, ତମେ ମୋର ଯେତେ ରାଗର କାରଣ ହେଲେ ମଧ, ମୁଁ ତମ ଉପରେ ରାଗିପାରିବି ନାହିଁ । ଯଦି ପରଜନ୍ମ ଥାଏ, ଆଉ ଯଦି ଆମେ ଦୁହେଁ ପୁଣି ଚିହ୍ନାଚିହ୍ନି ହେଉଁ, ତା'ହେଲେ ଥରକ ପାଇଁ ତମ ଉପରେ ରାଗିବି । ତାକୁ ଏଇ ଜନ୍ମର କର୍ମଫଳ ବୋଲି ସହିନେବ ।"

ପୁଷ୍ପ ମୋଡ଼ିଦେଉଦେଉ ହସିଉଠି କହିଲା–

"କାହିଁକି, ଏ ଜନ୍ମରେ ରାଗିଲେ କଣ ତ୍ରିବିଦ୍ୟା ସାଧନ ବ୍ୟର୍ଥ ହୋଇଯିବ ?"

ଶୁଭେନ୍ଦ୍ରର ଇଚ୍ଛା ହେଉଥିଲା କହିବାକୁ, କାହିଁକି ସେ ଏ ଜନ୍ମରେ ଶିଖଣ୍ଡୀ ପରି ଦେଖା ଦେଇ, ତା'ର ସାରା ଜୀବନଟା ପାଇଁ ଶରଶଯ୍ୟା ରଚନା କରିଦେଲା; କିନ୍ତୁ କହିପାରିଲା ନାହିଁ । ପ୍ରକାଶ୍ୟରେ କହିଲା–

"ବିଶ୍ୱାମିତ୍ରର ସାଧନା ତ ବ୍ୟର୍ଥ ହୋଇଥିଲା !"

ପୁଷ୍ପ ସେହିପରି ହସିହସି କହିଲା–

"ମୁଁ ତ ଆଉ ତ୍ରିବିଦ୍ୟା ନୁହେଁ ଯେ ତପସ୍ୟା ନକଲେ ମିଳିବ ନାହିଁ ! ଜନ୍ମ ଜନ୍ମ ଧରି ତ ଯିଏ ଯା'ର ସେ ତା'ର । ସେଥିରୁ କ'ଣ କିଏ କେବେ ଏପାଖସେପାଖ ହୋଇ ପାରିବ ? ଆଉ ଏ ଜନ୍ମ କଥା କ'ଣ ଆରଜନ୍ମକୁ ମନେରହିବ ଯେ ରାଗିବ ?"

ଶୁଭେନ୍ଦ୍ର ମୁହୂର୍ତ୍ତେ କ'ଣ ଭାବି କହିଲା–

"ଏକଥା ମୋଟେ ଯୁକ୍ତିଯୁକ୍ତ ନୁହେଁ, ପୁଷ୍ପ । ଯଦି ଜନ୍ମାନ୍ତର ସତ୍ୟ ହୁଏ, ଯିଏ ଯା'ର ସେ ଜନ୍ମଜନ୍ମ ଧରି ଯେ ତା'ରି ହୋଇ ରହିବ, ଏହାର କିଛି ଅର୍ଥ ନାହିଁ । ହୁଏତ ତମର କର୍ମଫଳ ଅନୁସାରେ ତମେ ଉଚ୍ଚତର ଜନ୍ମ ପାଇବ କିମ୍ବା ମୁଁ ମୋର କର୍ମଫଳ ପାଇଁ କୌଣସି ନିକୃଷ୍ଟ ଜନ୍ମ ମଧ ପାଇପାରେ । ଏକାଠି ହେବାର ଆଉ କାରଣ କାହିଁ ?"

ପୁଷ୍ପ କହିଲା–

"କିଛି କାରଣ ଅଛି କି ନାହିଁ ମୁଁ କହିପାରିବି ନାହିଁ । ମୁଁ ଜାଣିପାରୁଛି, ଦେଖିଲାକ୍ଷଣି ଯେ ଯାହାର ପରସ୍ପର ଚିହ୍ନାଚିହ୍ନି ହୋଇଯା'ନ୍ତି, ଆଉ ପ୍ରତ୍ୟେକ ପ୍ରତ୍ୟେକଙ୍କ ସହିତ ଟାଣିହୋଇ ମିଶିଯାଆନ୍ତି ।"

ଶୁଭେନ୍ଦ୍ର କହିଲା–

"ଆପଣାର ରୁଚି ଘେନି ନାରୀ-ପୁରୁଷ ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି । ଏହା ତ ସୃଷ୍ଟିର ନିୟମ ।"

ପୁଷ୍ପ ହସିହସି କହିଲା–

"ଦେଖା ହେଲେ ସିନା ରୁଚି ଘେନି ଆକୃଷ୍ଟ ହେବେ; କିନ୍ତୁ ସେମାନଙ୍କର ଯେ ନିଶ୍ଚୟ ମିଳନ ହେବ, ଏକଥା କିଏ କହିବ? କିନ୍ତୁ ଯାହାଙ୍କର ପୂର୍ବର ବାସନା ଅଛି, ସେମାନେ ପରସ୍ପର ପୂର୍ବରୁ ଦେଖା ନ ହେଲେ ମଧ୍ୟ, ସାତସମୁଦ୍ର ପାରିରେ ଥିଲେ ମଧ୍ୟ ନିଶ୍ଚୟ ମିଳିତ ହେବେ । କେହି ଅଟକାଇ ପାରିବେ ନାହିଁ । ତମର ମୋର କ'ଣ ଆଗରୁ ଦେଖା ହୋଇଥିଲା?"

ପୁଷ୍ପର ଏ ସରଳ ସୁନ୍ଦର କଥାଗୁଡ଼ିକ ଯୁକ୍ତି ହିସାବରେ ଯାହା ହେଉ, ତା'ର ଏ ସୁଦୃଢ଼ ବିଶ୍ୱାସ ଶୁଭେନ୍ଦ୍ରର ହୃଦୟରେ କିପରି ଆଘାତ କଲା, ତା' କେବଳ ତା'ର ଅନ୍ତର୍ଯ୍ୟାମୀ ଜାଣିଲେ । ସେ କେବଳ ଭାବିଲା–

ତମର ମୋର କ'ଣ ଆଗରୁ ଦେଖା ହୋଇଥିଲା?

ପୁଷ୍ପଠାରୁ ପଦସେବା ଗ୍ରହଣ କରିବାକୁ ସେ ଉଚିତ ମନେକରୁନଥିଲା । ସେଥିପାଇଁ ଅର୍ଦ୍ଧଶାୟିତ ଭାବରେ ବସି ଧୀର କଣ୍ଠରେ କହିଲା–

"ଥାଉ, ହାତକୁ ବେଶି କଷ୍ଟ ଦିଅନାହିଁ ।"

ମୃଦୁହାସ୍ୟର ସହିତ ପୁଷ୍ପ କହିଲା–

"ଏତକ ଆଉ କ'ଣ ଆରଜନ୍ମ ପାଇଁ ରହିବ? ମୁଁ ତ ଏତେ ଆଉ ଦୋହରା ପରିଶ୍ରମ କରିପାରିବି ନାହିଁ । ତା' ଉପରେ ପୁଣି ରାଗଯାକ ସବୁ ଆରଜନ୍ମ ପାଇଁ ରହିଲାଣି! ମତେ ବେଢ଼ି ଉପରେ କୋରଡ଼ା ଦବ ନା କଣ?"

ପୁଷ୍ପର ଏ ଅତି ନିରୀହ, ନିଃସନ୍ଦେହ ମନର କଥା ଶୁଣି ଶୁଭେନ୍ଦ୍ର ହତବୁଦ୍ଧି ହୋଇ ତାକୁ ବଲବଲ କରି ଅନାଇରହିଲା । ତା'ର ଆଉ ବାକ୍‌ସ୍ଫୁରଣ ହେଲାନାହିଁ । କିପରି ଯେ ଏତେବଡ଼ ସୁଦୃଢ଼ ନିଶ୍ଚୟତା ଉପରେ ସେ ବଜ୍ରପାତ କରିବ, ଏକଥା ସେ କୌଣସିମତେ ଭାବିପାରିଲା ନାହିଁ । ମନେମନେ ସେ ତୀବ୍ର ଅସ୍ୱସ୍ତିବୋଧ କରିବାକୁ ଲାଗିଲା । ମୁହଁ ଉପରେ ତା'ର ଗୋଟିଗୋଟି ହୋଇ ଭାବନାର ରେଖା ଫୁଟିଉଠିଲା ।

ଶୁଭେନ୍ଦ୍ରର ଭାବପ୍ରବଣତା ଦେଖି ପୁଷ୍ପ ଅନୁଯୋଗ କଲାପରି କହିଲା–

"ଏତେ ପଢ଼ିଲେ ମଣିଷର ସବୁବେଳେ ଭାବିଭାବି ଦିନ ଯାଏ । ତମେ ଏହିକ୍ଷଣି କେତେଦିନ ଏ ବହିଫଇ ସେଇଗୁଡ଼ା ପଢ଼ନା । ସିଧା ହୋଇ ଶୁଅ, ମୁଁ ପିଠିରେ ହାତ ମାରିଦିଏ ।"

ଶୁଭେନ୍ଦ୍ର କିଛି କହି ନ ପାରି, ବାଧ ହୋଇ ପୁଷ୍ପର ଆଦେଶ ପାଳନ କରି ଭାବିଲା–

"କଥାଟିକୁ ଏତେଦୂରଯାଏ ଆଣିବା ଫଳରେ ପ୍ରକାଶ କରିବାର ସାହସ ତାର କ୍ରମେ ଲୋପ ହୋଇଯାଉଛି । ପ୍ରଥମରୁ କହିଦେଇଥିଲେ ଭଲ ହୋଇଥାନ୍ତା । ତଥାପି କହିବାକୁ ହେବ । ନ ହେଲେ ଯେ କ୍ରମେ ତାର ନିଃଶ୍ୱାସପ୍ରଶ୍ୱାସ ଦ୍ୱାର ରୁଦ୍ଧ ହୋଇଆସୁଛି । କେତେବେଳେ ବନ୍ଦ ହୋଇଯିବ । ପୁଷ୍ପର ଅବସ୍ଥା ବା କ'ଣ ହେବ ! ତାକୁ ନ ଜଣାଇ ଅହରହ ଏହି ଭୀଷଣ ଉତ୍‌କଣ୍ଠା ଭିତରେ ପୋଡ଼ିଜାଳି ମାରିବା ଅପେକ୍ଷା, ଜଣାଇଦେଇ ତା' ପାଇଁ କିଛି ପ୍ରତିକାର କରିବା ସହସ୍ର ଗୁଣେ ଭଲ । ଏଥିରେ ପୁଷ୍ପର ଯାହାହେଉ ବା ତା' ନିଜର ଯାହା ହେଉ, ସତ୍ୟ ଏବଂ ସହଜ ସରଳ ବାଟଟି ଧରିବା ତା'ର କର୍ତ୍ତବ୍ୟ ।

ସେ ମନେମନେ ସ୍ୱସ୍ତିର ନିଶ୍ୱାସ ମାରି କର ଲେଉଟାଇ ବାମ ହସ୍ତ ତକିଆରେ ଦେଇ କହିବା ପାଇଁ ପ୍ରସ୍ତୁତ ହୋଇଗଲା ।

ପୁଷ୍ପ ପିଠି ଉପରୁ ହାତ ଆଣି ବାହୁ ଉପରକୁ ନେଲାବେଳେ ଶୁଭେନ୍ଦ୍ର ତା' ହାତକୁ ଧରିପକାଇଲା ।

ପୁଷ୍ପର ଶିରାପ୍ରଶିରାରେ ଯେପରି ଅନିର୍ବଚନୀୟ ଉଦ୍‌ବେଗର ବିଦ୍ୟୁତ୍ ଖେଳିଗଲା । ସେ ତତ୍‌କ୍ଷଣାତ୍ ନିଜକୁ ପ୍ରସ୍ତୁତ କରିନେଇ ମୋହାବିଷ୍ଟ ଭାବରେ ଶୁଭେନ୍ଦ୍ରକୁ ଚାହିଁରହିଲା ।

ଶୁଭେନ୍ଦ୍ର ବାଷ୍ପରୁଦ୍ଧ କଣ୍ଠରେ 'ପୁଷ୍ପ' ବୋଲି କହିବାକୁ ଯାଇ ତା'ର ଅଧରଯୁଗଳ ଏତେ ଜୋର୍‌ରେ ଥରିଉଠିଲା ଯେ ସେ 'ଷ୍ପ'ଟା ପୂର୍ଣ୍ଣରୂପେ ଉଚ୍ଚାରଣ କରିପାରିଲା ନାହିଁ ।

ଆଶା ଆଶଙ୍କାରେ ପୁଷ୍ପର ଅନ୍ତର ଛଟପଟ ହୋଇଗଲା । ଶୁଭେନ୍ଦ୍ର ପ୍ରାଣପଣେ ସାହସ ସଞ୍ଚୟ କରି ପାଟିରେ ଜୋର୍ ଆଣି ଡାକିଲା–

"ପୁଷ୍ପ !"

ପୁଷ୍ପ ଆହୁରି ଟିକେ ଶୁଭେନ୍ଦ୍ର ନିକଟକୁ ଘୁଞ୍ଚିବସିଲା ।

ଶୁଭେନ୍ଦ୍ର ସହଜ ଭାବରେ କହିଲା–

"ପୁଷ୍ପ ! ଅନେକଦିନ ହେଲା ଗୋଟିଏ କଥା କହିବାକୁ ଭାବୁଛି, କହିପାରୁନାହିଁ ।"

ପୁଷ୍ପର ହୃଦୟ କେଉଁ ଅଜ୍ଞାତ ବିପଦର ଆଶଙ୍କାରେ କମ୍ପିଉଠିଲା । ଶୁଭେନ୍ଦ୍ର ତାହା ବୁଝିପାରି ବହୁକ୍ଷଣ ଆଉ ତା' ପାଟିରୁ କଥା ବାହାରିଲା ନାହିଁ ।

ପୁଷ୍ପ ଶୁଭେନ୍ଦ୍ରର ଭାବରୁ ବୁଝିପାରିଲା, କ'ଣ ଘଟିବ । ସେ ନିଜର ମନକୁ ଶକ୍ତ କରିନେଇ ସାହସର ସହିତ କହିଲା–

"ଆଉ ଚୁପ୍ ହୋଇ ରୁହନା । ଭାବନାହିଁ ଯେ କୌଣସି ଦୁଃଖଶୋକର କଥା ଶୁଣି ମୁଁ ବିଚଳିତ ହୋଇପଡ଼ିବି । ତମେ ଜାଣନା, ମୁଁ କେତେ ଦୁଃଖ ସହିଛି ।"

ସେ ଭାବିଲା, ବୋଧହୁଏ ତା' ପିତାମାତାଙ୍କର କିଛି ଦୁଃସମ୍ବାଦ ପାଇବ ବୋଲି । କାରଣ ଏହି ଛ' ସାତ ମାସ ମଧ୍ୟରେ ସେ ସେମାନଙ୍କର କୌଣସି ସମ୍ବାଦ ପାଇନାହିଁ ।

ଶୁଭେନ୍ଦ୍ର ଅବିଚଳିତ ରହି ଧୀର ଭାବରେ କହିଲା–

"ପୁଷ୍ପ ! ମୁଁ ତୁମର ସ୍ୱାମୀ ନୁହେଁ ।"

ହଠାତ୍, କଙ୍କଡ଼ାବିଛା କାମୁଡ଼ିଦେଲେ ମନୁଷ୍ୟ ଯେପରି ତୀବ୍ର ଜ୍ୱାଳାରେ ଲମ୍ଫ ପ୍ରଦାନ କରି ଚିତ୍କାର କରିଉଠେ, ପୁଷ୍ପର ସେହି ଅବସ୍ଥା ହେଲା । ସେ ମୂର୍ଚ୍ଛିତ ହୋଇ ପଡ଼ିଗଲା ।

ଶୁଭେନ୍ଦ୍ର ଭାବିଲା, ବୋଧହୁଏ ସରିଗଲା । ତା'ର ବି ହୃଦ୍‌ଯନ୍ତ୍ର ବନ୍ଦ ହୋଇଗଲା ପରି ବୋଧ ହେଲା ତାକୁ । ସେ ବହୁ କଷ୍ଟରେ ନିଶ୍ୱାସ ମାରି, ଦମ୍ଭ ଧରି ପୁଷ୍ପର ଚେତନା ଫେରାଇଆଣିବା ପାଇଁ ତା'ର ଯଥାସାଧ୍ୟ ଚେଷ୍ଟା କଲା । କିଛି ସମୟ ପରେ ପୁଷ୍ପ ସଚେତନ ହୋଇ ଆକୁଳ ଭାବରେ ଶୁଭେନ୍ଦ୍ରକୁ ଚାହିଁଲା ।

ଶୁଭେନ୍ଦ୍ର ତା'ର ସମସ୍ତ ସ୍ନେହ, ସମସ୍ତ ଆଦର ଅଜାଡ଼ି ଦେଇ ପୁଷ୍ପ ଦେହରେ ହାତ ବୁଲାଇଦେଇ କହିଲା–

"କିଛି ଚିନ୍ତା କରନା । ମୁଁ ମୋର ପ୍ରାଣ ଦେଇ ତମର ଯେପରି ଭଲ ହେବ କରିବି । ବର୍ତ୍ତମାନ ଶୋଇପଡ଼ ।"

ଏହା କହି ପୁଷ୍ପକୁ ଧୀର ଭାବରେ ଧରି ଶୁଆଇଦେଲା ।

ପୁଷ୍ପର ଭାବନାଶକ୍ତି ନଥିଲା, ସେ ଯେପରି ଗୋଟିଏ ପ୍ରସ୍ତର ମୂର୍ତ୍ତି ପରି ଶୋଇରହିଲା ।

ଶୁଭେନ୍ଦ୍ରର ଏଥିରେ ସ୍ୱାଭାବିକ ନିଦ୍ରା ନ ହେବାର କଥା । ସେ ସମସ୍ତ ରାତ୍ରି ଜାଗ୍ରତ ରହି ପୁଷ୍ପ ଦେହରେ ହାତ ବୁଲାଇବାକୁ ଲାଗିଲା ।

ଶୁଭେନ୍ଦ୍ର ଆଜି ବୁଝିପାରିଲା, ଏଥିମଧ୍ୟରେ ପୁଷ୍ପକୁ ସେ କେତେ ଭଲପାଇଛି । ଆଉ ଏକଥା ମଧ୍ୟ ଭଲ ଭାବରେ ବୁଝିପାରିଲା ଯେ ପୁଷ୍ପ ବ୍ୟତୀତ ଆଉ ସେ ଦଣ୍ଡେ ବଞ୍ଚିପାରିବ ନାହିଁ ।

ରାତ୍ରି ଭୋର୍ ହୋଇଗଲା । ଶୁଭେନ୍ଦ୍ର ପୁଷ୍ପ ନିକଟରୁ ଉଠିଗଲା ।

ମିନି ଆସି ପୁଷ୍ପକୁ ହଲାଇଦେଇ କହିଲା

"ବାଃରେ, ଭାରି ତ ଚାଲାକ୍ ! କେତେବେଳେ ଉଠିଆସି ଏଠି ଶୋଇପଡ଼ିଛ !"

ପୁଷ୍ପକୁ ଏପରି ନିଦ ହୋଇଥିଲା ଯେ ସେ ମିନି କଥା ଶୁଣିପାରିଲା ନାହିଁ ।

ଶୁଭେନ୍ଦ୍ର ଆସି କହିଲା–

"ଏହିକ୍ଷଣି ଉଠାନା ।"

ରାତିଯାକ ଭାବିଭାବି ଶୁଭେନ୍ଦ୍ର ଠିକ୍ କରିଛି ଯେ ସେ କେବେହେଁ ପୁଷ୍ପକୁ ନିରାଶ କରିବ ନାହିଁ । ତାକୁ ବିବାହ କରିବ, ପୁଷ୍ପ ଯାହା ହେଉ–ବେଶ୍ୟାକନ୍ୟା ହେଉ ବା ନୀଚଜାତିର କନ୍ୟା ହେଉ ।(ଦୁଷ୍ମନ୍ତ ତ ବେଶ୍ୟାକନ୍ୟା ଶକୁନ୍ତଳାକୁ ବିବାହ କରିଥିଲେ ! ମଗଧର ସମ୍ରାଟ ଚନ୍ଦ୍ରଗୁପ୍ତ ଜଣେ ଶୂଦ୍ର ରମଣୀର ଗର୍ଭରୁ ଜାତ...)

(ଅପବିତ୍ର ସ୍ଥାନରୁ ମାଣିକ୍ୟ ଆଣିଲେ ମାଣିକ୍ୟ ଦୋଷଯୁକ୍ତ ହୁଏ ନାହିଁ । ଭୂଗର୍ଭରୁ ଅନ୍ଧକାର ଗହ୍ୱର ମଧ୍ୟରୁ ହୀରା ଆହରଣ କରାଯାଏ । ସମୁଦ୍ର ଭିତରେ ବୁଡ଼ି ମୁକ୍ତା ସଂଗ୍ରହ କରିବାକୁ ହୁଏ ।)

ଆଉ ସମାଜ, ଏଥିପାଇଁ ଘୃଣା କରିବ ତାକୁ ! ସେ ତ ଏହି କେତେଗୁଡ଼ିଏ ସ୍ୱାର୍ଥପର ମନୁଷ୍ୟହାତରେ ଗଢ଼ା । ତା'ର ଅତି ଅଯୌକ୍ତିକ ତୁଚ୍ଛ ନିୟମର ଜନ୍ତା ଭିତରେ, ଅନ୍ୟ କେତେ ଅସହାୟ ଜୀବନ ଦଳିତପେଷିତ ହେଲାପରି, ସେ ପୁଷ୍ପକୁ ସେଥିରେ ବଳି ଦେବ ? ପୁଷ୍ପ କାହିଁକି ? ଗୋଟିଏ ମନୁଷ୍ୟର ଜୀବନ ମାଟିର କଣ୍ଢେଇ ନୁହେଁ କୁକୁର ବିଲେଇ ନୁହେଁ । ସମାଜକୁ ଡରି ଏହି ନିରୀହ ସୁକୁମାର ଜୀବନଟିକୁ ସେ ପାଦରେ ମାଡ଼ି ଚୂର୍ଣ୍ଣ କରିଦେବ ? ସେ କ'ଣ ଏଡ଼େ ଆରଣ୍ୟକ ବର୍ବର ହୋଇଛି ଯେ ଗୋଟିଏ ମନୁଷ୍ୟଜୀବନର ଦାୟିତ୍ୱବୋଧ ତା'ର ନାହିଁ ?

(ଲୋକେ କହିବେ, ଗୋଟାଏ ବାଟରୁ ସାଉଁଟିଆଣି ସୁନ୍ଦରୀ ବୋଲି ଦେହ ଲାଳସାରେ ଭଲମନ୍ଦ ନ ଭାବି ବିବାହ କରିଛି । ଭାବନ୍ତୁ, ତା'ର ସେଥିରେ ଯାଏଆସେ କେତେ ? ଜନତା, ସେ ତ ଅତି ତୁଚ୍ଛ ଗୋଟାଏ କାକଗୋଷ୍ଠୀ ବ୍ୟତୀତ ଆଉ କିଛି ନୁହେଁ । କେବଳ କା କା ହୋଇ ଉଡ଼ି ବୁଲିବେ ମାତ୍ର । ସେମାନେ ତା'ର କ'ଣ

କରିବେ ? ଆଉ ମଧ୍ୟ ଭାବିବେ, ଯେଉଁ ମହତ ଉଦ୍ଦେଶ୍ୟରେ ତାକୁ ଏତେ ପ୍ରାଣପାତ କରି ବଞ୍ଚାଇଲା, ବିବାହ କରିବା ଦ୍ୱାରା ସେ ମହତ୍ତ୍ୱକୁ ରକ୍ଷା କରିପାରିଲା ନାହିଁ ତ ! ବରଂ ଦୁର୍ନାମ କରିବା ପାଇଁ ଆହୁରି ପଥ ସୁଗମ କରିଦେଲା । ଯଦି ଗୋଟିଏ ମନୁଷ୍ୟ ଜୀବନ ପ୍ରତି ଏତେ ଦରଦ ଥିଲା, ତା'ହେଲେ ଗୋଟିଏ ସୁପାତ୍ରରେ ତାକୁ ବିବାହ କରାଇ ନଦେଇ ନିଜେ ବିବାହ କଲା କାହିଁକି ? ସେ ନିଜେ କ'ଣ ସୁପାତ୍ର ନୁହେଁ ? ଯିଏ ତା'ର ବିବାହ କରିବ, ତା' ଉପରେ କ'ଣ ଏହି ମୂର୍ଖ ଜନତାର ଏହି ଅର୍ଥଶୂନ୍ୟ ଅକାରଣ ଆକ୍ରୋଶ ପଡ଼ିବ ନାହିଁ ? ଜନତା ଅତି ପରଶ୍ରୀକାତର ମୂର୍ଖ, ଅନ୍ଧ । ସେ ମନୁଷ୍ୟର ମହତ୍ତ୍ୱ, ଜ୍ଞାନ, ଗରିମା, ମନୁଷ୍ୟର ଐଶ୍ୱର୍ଯ୍ୟକୁ ବରାବର ଖର୍ବ କରିଛି । ସେ କେବେହେଁ ଜନତାର ଦ୍ୱାରକୁ ହାତ ପାତିବାକୁ ଯିବନାହିଁ । ତା'ର ଯଥେଷ୍ଟ ଧନ ଅଛି । ଯଦି ପୃଥିବୀର ସମସ୍ତେ ତାକୁ ତ୍ୟାଗ କରନ୍ତି, ତଥାପି ସେ ପୁଷ୍ପକୁ ତ୍ୟାଗ କରିପାରିବ ନାହିଁ ।

ଶୁଭେନ୍ଦ୍ର ଏହି କଥା ଭାବି ଦୃଢ଼ନିଶ୍ଚିତ ହେଲା ଯେ ସୁବିଧା ଦେଖି ସେ ପୁଷ୍ପକୁ ତା'ର ମନୋଭାବ ବ୍ୟକ୍ତ କରିବ ।

ଦିନ ସାଢ଼େଆଠଟା ବେଳେ ପୁଷ୍ପର ନିଦ ଭାଙ୍ଗିଲା । ସେ ଦେଖିଲା, ଶୁଭେନ୍ଦ୍ର ତା' ପାଖରେ ବସି ଆଉଁଶିଦେଉଛି ! ସେ ଶୀଘ୍ର ଉଠିପଡ଼ି ଲଜ୍ଜାରେ ମୁଣ୍ଡ ଉପରକୁ ଲୁଗାଟା ଟାଣିଦେଇ, ତା' ଶୋଇବା କୋଠରିକୁ ଟଳିଟଳି ଚାଲିଗଲା । ଦାସୀ ଗାଧୋଇବା ପାଣି ଦେଇ ଡାକିଗଲା; କିନ୍ତୁ ପୁଷ୍ପ ତା'ର ସେହି ବସିବା ସ୍ଥାନଟିରୁ ଆଉ ଉଠିପାରିଲା ନାହିଁ । ତା'ର ଯେପରି ସର୍ବାଙ୍ଗ ପରାଣ ହୋଇଯାଇଛି । ଦେହରେ ମୋଟେ ଜୋର୍ ନାହିଁ । ହାତଗୋଡ଼ ଅବଶ ହୋଇଯାଇଛି ।

ମିନି ଗାଧୋଇବା ପାଇଁ ପୁଷ୍ପକୁ ଟାଣିଟାଣି ବିରକ୍ତ ହୋଇ କହିଲା–

"ଯା, ମୁଁ ଆଉ ତୁମକୁ ପାଟି ଫିଟେଇବି ନାହିଁ ।"

ରାଗରେ ପୁଷ୍ପକୁ ଟିକେ ଠେଲିଦେଇ ଖଟ ଉପରକୁ ଯାଇ ତକିଆରେ ମୁହଁମାଡ଼ି ଶୋଇପଡ଼ିଲା । ତା'ର ଇଚ୍ଛା, ପୁଷ୍ପ ଯେତେବେଳେ ତା' କଥା ଶୁଣିଲା ନାହିଁ, ସେ ଆଉ ତାକୁ ମୁହଁ ଦେଖାଇବ ନାହିଁ ।

ପୁଷ୍ପ ମ୍ରିୟମାଣ ହୋଇ କାନ୍ଥକୁ ଆଉଜି ବସିଥିଲା । ସୁଦୀର୍ଘ ଭବିଷ୍ୟତ କଥା ତା'ର ଅଳ୍ପ ଅଭିଜ୍ଞତା ଭିତରେ କିଛି ଭାବି ଠିକ୍ କରିନପାରି ଦୁଃଖସନ୍ତାପର ତୀବ୍ର କଷାଘାତରେ କାଠ ପାଲଟିଯାଇଥିଲା । କେବଳ ଗୋଟାଏ ଗଭୀର ମର୍ମବେଦନାର କୋହ ତା'ର ଅନ୍ତରରୁ ମୁହୁର୍ମୁହୁଃ ବାହାରି ଗଣ୍ଡଦେଶରେ ତା'ର ଲୋତକର ବନ୍ୟା ବୁହାଇଦେଉଥିଲା ।

ମିନି ତକିଆରୁ ମୁହଁ ଉଠାଇ ସାବଧାନତାର ସହିତ ପୁଷ୍ପ ଆଡ଼କୁ ଚାହିଁ ଦେଖିଲା, ସେ କାନ୍ଦୁଛି । ତା'ର ସବୁ ଅଭିମାନ କେଉଁଆଡ଼େ ଉଭେଇଗଲା । ସେ ଚଞ୍ଚଳ ଉଠିଆସି ପୁଷ୍ପକୁ କୁଣ୍ଢେଇଧରି ବ୍ୟାକୁଳ ଭାବରେ କହିଲା–

"ହେ ନୂଆବୋଉ, ତମକୁ କ'ଣ କାଟିଲା ? ହେ, ତମକୁ ମୋ' ରାଣ, ତମ ଗୋଡ଼ ତଳେ ପଡୁଚି ନୂଆବୋଉ, ତମେ କାନ୍ଦନା । ନନା ଶୁଣିଲେ ଏହିକ୍ଷଣି ରାଗିବେ, ମୁଁ ଗେଲରେ ଠେଲିଦେଲି ନା ।"

ପୁଷ୍ପ ପ୍ରାୟ ବାହ୍ୟଜ୍ଞାନ ହରାଇଦେଇଥିଲା । ଦୁଃଖରେ ଏପରି ଅଭିଭୂତ ହୋଇଯାଇଥିଲା ଯେ ମିନିର କଥା କିଛି ଶୁଣିପାରିଲା ନାହିଁ । ମିନି ତା' ମୁହଁକୁ ବ୍ୟାକୁଳ ଭାବରେ ଅନାଇ ଅନାଇ ତା'ର ଶିଶୁହୃଦୟ ପୁଷ୍ପ ପ୍ରତି ସହାନୁଭୂତିରେ ପୂର୍ଣ୍ଣ ହୋଇଗଲା । ସେ ପୁଷ୍ପକୁ ଆହୁରି ଜୋର୍‌ରେ କୁଣ୍ଢାଇଧରି କାନ୍ଦିଉଠିଲା । କାନ୍ଦୁକାନ୍ଦୁ ଅର୍ଦ୍ଧଉଚ୍ଚାରିତ ଭାବରେ କହିବାକୁ ଲାଗିଲା–

"ହେ, ହେ ମୋ ନୂଆବୋଉ, ତମେ କାନ୍ଦନା ।"

ଶୁଭେନ୍ଦୁ କାଲି ରାତ୍ରିର ଘଟଣା ଭାବି ଭାବି ପୁଷ୍ପର ଖବର ନେବାପାଇଁ ଉପରକୁ ଉଠିଆସୁଥିଲା, କ୍ରନ୍ଦନର ଶବ୍ଦ ଶୁଣିପାରିଲା । କ୍ଷିପ୍ର ପଦରେ ଗୃହ ଭିତରେ ପ୍ରବେଶ କରି, ଏହି କରୁଣ ଦୃଶ୍ୟ ଦେଖିବା ମାତ୍ରେ ତା' ଦେହରେ ଯେପରି କିଏ ତପ୍ତ ଲୌହ ଶଳାକା ବିଦ୍ଧ କରିଦେଲା ପରି ଯନ୍ତ୍ରଣାରେ ସେ ଚିତ୍କାର କରିଉଠିଲା । ନିଜକୁ ସମ୍ଭାଳି ରଖିପାରିଲା ନାହିଁ। ଆଖିରୁ ତା'ର ଝରଝର ହୋଇ ଲୁହ ଝରିପଡ଼ିଲା ।

ଅତି କଷ୍ଟରେ ଲୁଗାକାନିରେ ମୁହଁ ପୋଛିଦେଇ, ମିନି ହାତକୁ ପୁଷ୍ପର ଦେହରୁ ଖସାଇଆଣି ମୁହଁରେ ତା'ର ହାତ ବୁଲାଉବୁଲାଉ ବୁଝାଇଦେଇ କହିଲା–

"ଛି, କାନ୍ଦନା, ନୂଆବୋଉ ଦେହ ଭଲ ନାହିଁ ପରା ! ମୁଣ୍ଡ ବଥଉଚି । ତୁ କାନ୍ଦିଲେ ବେଶି ମୁଣ୍ଡ ବଥେଇବ । ଗଲୁ, ତଳେ କହିଦେବୁ, ଶୀଘ୍ର ପାଣି ଗରମ କରିବାକୁ । ଆଜି ଥଣ୍ଡାପାଣିରେ ଗାଧୋଇବ ନାହିଁ ।"

ମିନି ଆଶ୍ୱସ୍ତ ହୋଇ ତଳକୁ ଚାଲିଗଲା–

ଶୁଭେନ୍ଦୁ ପୁଷ୍ପକୁ କୋଳକୁ ଆଉଜାଇ, ଯେତେ ପାରେ କଣ୍ଠରେ କୋମଳତା ଆଣି ଅତି ନିଜର ପରି ଆକୁଳ ଅନୁନୟ ସ୍ୱରରେ କହିଲା–

"ପୁଷ୍ପ, ପୁଷ୍ପ, ହେ ! ଶୁଭୁନାହିଁ ? ମତେ ଅନେଇଲ ।"

ପୁଷ୍ପ ଶୁଭେନ୍ଦ୍ରର ଛାତିରେ ମୁଣ୍ଡ ରଖି ଅନୁଚ୍ଚ ନିର୍ଜ୍ଜୀବ ସ୍ୱରରେ କେବଳ ଏତକି ଶବ୍ଦ କଲା–

"ହୁଁ-ଅଁ-ଅଁ-ଅଁ ।"

ଶୁଭେନ୍ଦ୍ର କରୁଣ ଉତ୍କଣ୍ଠାର୍ଦ୍ର ବ୍ୟାକୁଳ ଆବେଗରେ ତା'ର ଚିବୁକଟିକୁ ହଲାଇଦେଇ କହିଲା–

"ଶୁଭୁଛି ? କାନ୍ଦନା, ମୁଁ ପରା ଅଛି । ମତେ ବିଶ୍ୱାସ କରିପାରୁନା ? ଉଠିଲ ଏ ତଳଟାରୁ ।"

## ଏଗାର

ଶୁଭେନ୍ଦ୍ର ବହୁ ଯତ୍ନରେ ପୁଷ୍ପର ଦୁର୍ଦ୍ଦମନୀୟ ଶୋକୋଚ୍ଛ୍ୱାସ କିଞ୍ଚିତ୍ ଦମନ କରିଦେଲା । ମାତ୍ର ତା'ର ଭିତରେ ବାହାରେ କାରୁଣ୍ୟର ଯେଉଁ ଶୂନ୍ୟ ଲଗ୍ନ ଆବେଷ୍ଟନୀ ସୃଷ୍ଟି ହେଲା, ସେଥିରେ ତା'ର ସରଳ ଚିତ୍ତବୃତ୍ତି ସବୁ ହଜିଗଲା । ସେ କାହାରି ସହିତ କିଛି କଥାବାର୍ତ୍ତା କରିପାରିଲା ନାହିଁ । କେବଳ ସକରୁଣ ମର୍ମସ୍ପର୍ଶୀ ଚାହାଣିରେ ଚାହିଁରହିଲା–

ମିନି ପୁଷ୍ପର ଏହି ଜଡ଼ଭାବ ଦେଖି ମନେମନେ ବଡ଼ କାତର ହୋଇପଡ଼ିଛି । ଅନୁତପ୍ତ ହୋଇ ଭାବୁଛି–

କାହିଁକି ସେ ତା'ର ଅତି ଆଦରର, ଆପଣାର, ଅତି ପ୍ରିୟ ନୂଆବୋଉକୁ ଠେଲିଦେଲା !

ବେଳେବେଳେ ପୁଷ୍ପକୁ ଧରି ଅନୁନୟ କରି କହୁଛି–

"ନୂଆବୋଉ, ତମ ମୁଣ୍ଡ କ'ଣ ଭାରି ବଥଉଚି ? ଶୋଇବ ଚାଲ, ମୁଁ ଚିପିଦେବି ?"

ପୁଷ୍ପ କେବଳ ନିରୀହ ଶିଶୁଟି ପରି ତା' ମୁହଁକୁ ଚାହିଁରହୁଛି ।

ମିନି କିଛି ବୁଝିପାରୁନାହିଁ, ଭାବୁଛି–

ନୂଆବୋଉଙ୍କର ଏମିତି ଆଉ କ'ଣ ହେଲା !

କେତେବେଳେ ପୁଷ୍ପକୁ କୁଣ୍ଢାଇଧରି ପଚାରୁଛି–

"ନୂଆବୋଉ ମ, କଥା କହୁନା କାହିଁକି ?"

ପୁଷ୍ପ ଆଗରେ କଥାଟି ପ୍ରକାଶ କରିଦେବା ଦ୍ୱାରା ଭଲ କରିଛି କି ଖରାପ କରିଛି, ଶୁଭେନ୍ଦୁ କିଛି ଠିକ୍ କରିପାରୁନାହିଁ । କେତେବେଳେ ତା'ର ମନେହେଉଛି, ନ ଜଣାଇ ସେ ବା ତାକୁ ପ୍ରତାରଣା କରିଥାନ୍ତା କିପରି ? ଯାହାକୁ ସେ ନିଜର ଜୀବନ ଅପେକ୍ଷା ବେଶି ଭଲପାଉଛି, ତାକୁ ମିଥ୍ୟା କପଟତାର ଆବରଣ ପିନ୍ଧାଇ, ତା'ଠାରୁ ସତ୍ୟର ସ୍ୱରୂପକୁ ଗୋପନ କରି ରଖିପାରିଥାନ୍ତା ବା କିପରି ? ଯେଉଁଠାରେ ପ୍ରାଣହିଁ ବିନିମୟ କରିବାର ପଣ୍ୟ, ସେଠାରେ କିଛି ଗୋପନ ରଖିବାର ସ୍ଥାନ ବା କାହିଁ ?

ମାତ୍ର ଯେତେବେଳେ ପୁଷ୍ପର ବର୍ତ୍ତମାନ ମନର ଅବସ୍ଥା ତା'ରି ହୃଦୟ-ଦର୍ପଣର ସ୍ୱଚ୍ଛ ପରଦା ଉପରେ ପ୍ରତିବିମ୍ବିତ ହେଉଛି, ସେ ଘୋର ଅନୁଶୋଚନାର ତୀବ୍ର ଜ୍ୱାଳାରେ ଛଟପଟ ହୋଇଯାଉଛି । ଭାବୁଛି, ପ୍ରକାଶ ନ କରିଥିଲେ ଭଲ ହୋଇଥାନ୍ତା । ଯେତେବେଳେ ସେ ତାକୁ ବିବାହ କରିବ ବୋଲି ଦୃଢ଼ପ୍ରତିଜ୍ଞ, ବିବାହର ବହୁଦିନ ପରେ ଜଣାଇଥିଲେ ବି କ୍ଷତି ହୋଇ ନ ଥାନ୍ତା । ବର୍ତ୍ତମାନ ପରି ଏହି ଶୋଚନୀୟ ଅବସ୍ଥାର ସୃଷ୍ଟି ହୋଇନଥାନ୍ତା ! ନିଜର ଅଜ୍ଞାନତା ଦୋଷରୁ ସୁମନ ସୁକୁମାର ମନଟିରେ ତା'ର ଏତେବଡ଼ ଗୁରୁତର ଆଘାତ ଦେଇ ସେ ଯେ କି ପୈଶାଚିକତା, କି ହୃଦୟହୀନତା ଦେଖାଇଛି, ତା'ର ପରିଣାମ ଯେ କ'ଣ ହେବ, କିଛି ଭାବିପାରୁନାହିଁ । ତଥାପି ସେ ତା'ର ସମସ୍ତ ଧୈର୍ଯ୍ୟର ସହିତ ସଂକଳ୍ପ କରି ପୁଷ୍ପକୁ ରକ୍ଷା କରିବା ପାଇଁ ତା'ର ଦେହ, ମନ, ପ୍ରାଣ, ଐଶ୍ୱର୍ଯ୍ୟ, ଯଶ, ସମସ୍ତ ହିଁ ଅକାତରେ ବଳି ଦେବ ।

ପୁଷ୍ପ ଯେପରି ବୋକା ଆଉ ବୋବା ପାଲଟିଯାଇଛି ! ସେ ଯେ ମନୁଷ୍ୟ,ତା'ର ପ୍ରାଣ ଅଛି, ତାକୁ ଗାଧୋଇବାକୁ ହେବ, ଖାଇବାକୁ ହେବ, ଏକଥା ସବୁ ଭୁଲିଯାଇଛି ।

ଶୁଭେନ୍ଦୁ କାୟା ସଙ୍ଗେ ଛାୟା ପରି ତା' ସାଥିରେ ରହି, ତାକୁ ପ୍ରବୋଧନା ଦେଇ, ତା'ର ମନ ପରିବର୍ତ୍ତନ ପାଇଁ ଯତ୍ନ କରୁଛି । ବେଳେବେଳେ ତାକୁ କୁଣ୍ଢାଇ ଧରି ହୃଦୟର ଆବେଗଭରା ଚାହାଣିରେ ଚାହିଁ କହୁଛି–

"ଛି, କାହିଁକି ଏମିତି ହଉଛ, ମୁଁ ଅଛି ପରା, ମତେ ବିଶ୍ୱାସ କରିପାରୁନା ?"

ପୁଷ୍ପ କେବଳ ତା'ର ନିରାଶ୍ରୟ କରୁଣ ଚାହାଁଣିଟି ଶୁଭେନ୍ଦୁ ଉପରେ ପକାଇ ତାକୁ ଜଳଜଳ କରି ଚାହିଁରହୁଛି ।

ଏହିପରି ଜଡ଼ତା ଭିତରେ ପୁଷ୍ପର କେତୋଟି ଦିନ କଟିଗଲା ।

## ବାର

ଦିନେ ମିନି ବିରକ୍ତ ହୋଇ ଟାଣି ଟାଣି ପୁଷ୍ପକୁ ଗାଧୁଆଘରକୁ ଘେନିଗଲା । କ'ଣ ଭାବି ପୁଷ୍ପର ହଠାତ୍ ପରିବର୍ତ୍ତନ ହୋଇଗଲା । ଗାଧୋଇବାକୁ ଯାଇ ମିନି ସଙ୍ଗରେ ହସଖେଳ, ପାଣି ଫୋପଡ଼ାଫୋପଡ଼ିରେ ଗାଧୁଆଘର ଉଛୁଳାଇ ପକାଇଲା । ମିନି ତା'ର ଏ ଢଙ୍ଗ ଦେଖି ଆଶ୍ଚର୍ଯ୍ୟ ହୋଇ, ପରିହାସ କରି କହିଲା–

"ତମେ ନୂଆବୋଉନା ! କାଲି ଗୋଟିଏ ଫେସନ, ଆଜି ଗୋଟିଏ ଫେସନ୍ । ସେଦିନ ସିନେମାରୁ ଏତକ ଶିଖିଆସିଛ ପରା । ଡାକିବିନା ନନାଙ୍କୁ? ସତେ କ'ଣ କଥା କହିଲଣି ?

ପୁଷ୍ପ ତା' ପାଟି ଉପିଧରିଲା–

ଖାଇବାକୁ ବସି ପ୍ରତ୍ୟେକ ଖାଇବା ଜିନିଷଟିକୁ କହିଲା–

"ଭାରି ଖରାପ । ଶୀଘ୍ର ଏ ରାନ୍ଧୁଣିଆଟାକୁ ବିଦାକରିଦିଅ, କିଛି କାମର ନୁହେଁ ।"

ଶୁଭେନ୍ଦ୍ର ପାଖକୁ ଯାଇ, ତା' ମୁଣ୍ଡବାଳଗୁଡ଼ିକୁ ଏପାଖସେପାଖ କରି କହିଲା–

"ବାଳଗୁଡ଼ାକ ଏତେ ଅଲରାବଲରା ହୋଇଛି, ଦେଖା, କୁଣ୍ଡାଇଦିଏ ।"

ଏହା କହି ଚିରୁଣୀଟା ଆଣି ଏପାଖସେପାଖ ବୁଲି, ମୁଣ୍ଡଟିକୁ ଚିକଣ କରି କୁଣ୍ଡାଇଦେଇ, ତା' ଓଠଟିକୁ ହଲାଇଦେଇ କହିଲା–

"ଠିକ୍ ଯେମିତି କାର୍ତ୍ତିକେଶ୍ୱର ।"

ଶୁଭେନ୍ଦ୍ର ବିସ୍ମିତ ହୋଇ ତାକୁ ଉହିଁଲା । ଆଉ ତା'ର ଏପରି ବ୍ୟବହାର ଦେଖି ଭାବିଲା, ଏ ନିର୍ବାଣୋନ୍ମୁଖ ପ୍ରଦୀପର ଲକ୍ଷଣ, ଆଉ କିଛି ନୁହେଁ । ସେ ବଡ଼ ବ୍ୟଥିତ ହେଲା । ପୁଷ୍ପକୁ କିଛି ନ କହି ସତର୍କ ରହିଲା, କିପରି ତାକୁ ତା'ର ମନର ଭାବ ଜଣାଇବ । ଏଥିପାଇଁ ସମୟ ଖୋଜିବାକୁ ଲାଗିଲା ।

ଶୁଭେନ୍ଦ୍ର ଯେ ତା' ପାଇଁ ସତର୍କ ଅଛି, ପୁଷ୍ପ ଏହା ଶୁଭେନ୍ଦ୍ରର କାର୍ଯ୍ୟ ଗତିରୁ ଜାଣିପାରି ତାକୁ କହିଲା–

"ତମେ କିଛି ଚିନ୍ତା କରନା । ମୁଁ ଜାଣିଛି, ତମେ ଥାଉଥାଉ ଯମର ବି ମୋ' ଉପରେ ଅଧିକାର ନାହିଁ । ଥିଲେ ବି ସେ ତମ ସାଙ୍ଗରେ ଲଢ଼ି ଯଶ ନେଇପାରିବ ନାହିଁ । ସେ ସିନା ତା'ର କର୍ତ୍ତବ୍ୟ କରିବ, ତମପରି ତ ସେ ଆଉ ତାର ଧନ, ମାନ ପ୍ରାଣ ବଳି ଦେଇପାରିବ ନାହିଁ !"

ପୁଷ୍ପ କେତେବେଳେ ମିନିକୁ କୋଳରେ, କେତେବେଳେ କାଖରେ, କେତେବେଳେ ଛାତିରେ ଉପିଧରେ, କେତେବେଳେ ଚୁମ୍ବନ ଦିଏ । ତାକୁ ବ୍ୟସ୍ତ କରିପକାଏ । ମିନି କହେ–

"ନୂଆବୋଉ, ତମେ କ'ଣ ଭାଙ୍ଗ ଖାଇଚ କି ?"

ଏ ଦୁଇ ଦିନ ଭିତରେ ପୁଷ୍ପ ମିନିକୁ ଆହୁରି ନିଜର କରିନେଇଛି ।

ପ୍ରିୟତମ ବସ୍ତୁ ହାତରୁ ଗଲାବେଳେ ଯେପରି ଶେଷଥର ପାଇଁ ଆଖି ପୂର୍ଣ୍ଣକରି ଦେଖିନିଅନ୍ତି, ପୁଷ୍ପ ସେହିପରି ଶୁଭେନ୍ଦ୍ର ଓ ମିନିକୁ ଦେଖିନେଇଛି ।

ଆରଦିନ ସକାଳୁ ଶୁଭେନ୍ଦ୍ର ବସି ଖଣ୍ଡେ ରେଲ୍‌ଓ୍ୱେ ଗାଇଡ୍ ଦେଖୁଛି, ପୁଷ୍ପ ବାୟୁ ବେଗରେ ଘରେ ପ୍ରବେଶ କରି ଶୁଭେନ୍ଦ୍ରର ପଛପଟ ଚେୟାରକୁ ଧରି ଛିଡ଼ାହୋଇ ସହଜ ଭାବରେ ପଚାରିଲା–

"କ'ଣ ଦେଖୁଛ କି ?"

ପୁଷ୍ପର ସ୍ୱରରେ ଏତେ ଶିଶୁଭାବ ଥିଲା ଯେ ଶୁଭେନ୍ଦ୍ର ଅନ୍ୟମନସ୍କ ଥିବାରୁ ହଠାତ୍ ଧରିପାରିଲା ନାହିଁ କା'ର ବୋଲି । ଆଗ୍ରହରେ ପଛକୁ ଉହିଁଦେଲା । ନିମିଷକ ପାଇଁ ଦୁହେଁ ଦୁହିଁଙ୍କୁ ମୁଗ୍ଧ ଭାବରେ ଉହିଁ ଆଖି ଫେରାଇନେଲେ । ବେଶିକ୍ଷଣ କେହି କାହାକୁ ଉହିଁପାରିଲେ ନାହିଁ । ଏ ଉହାଣି ପାଇଁ ବେଶି ସମୟର ପ୍ରୟୋଜନ ହୁଏ ନାହିଁ । ଗୋଟିଏ ପଲକ ଭିତରେ ଏକ ଅନ୍ୟକୁ ବୁଝିପାରେ । ଉଭୟେ ବୁଝିଲେ, ଉଭୟେ ଉଭୟଙ୍କୁ ଉହାନ୍ତି ।

ଗାଇଡ୍ ଉପରେ ଦୃଷ୍ଟି ନତକରି ଶୁଭେନ୍ଦ୍ର ସହଜ ଭାବରେ ହସି ହସି କହିଲା–

"ମୋର ଜଣେ ବନ୍ଧୁ ଥାଆନ୍ତି ମୋଗଲସରାଇରେ ଷ୍ଟେସନ୍ ମାଷ୍ଟର । ତାଙ୍କର ବିବାହକୁ ସେ ଚିଠିରେ ନିମନ୍ତ୍ରଣ କରିଅଛନ୍ତି । ଯିବାକୁ ବହୁତ ଅନୁରୋଧ କରିଅଛନ୍ତି । ଭାବୁଛି, ଯାଇ ଟିକେ ବୁଲିଆସିବି । ଅନେକ ଦିନ..."

ଅନେକ ଦିନହେଲା ଆଉ ଯିବ କୁଆଡ଼େ ?

ପୁଷ୍ପ କଥା ଛଡ଼େଇନେଇ କହିଉଠିଲା–

"ଏତେ ଦିନ ହେଲା ତା' ଋଣ ଶୁଝୁଁଶୁଝୁଁ ଗଲା !"

ଶୁଭେନ୍ଦ୍ର ବୁଝିପାରି ପଛଆଡ଼କୁ ହାତ ବଢ଼ାଇ ସସ୍ନେହରେ ପୁଷ୍ପର ହାତଟିକୁ ଧରି ତାକୁ ଆଗକୁ ଟାଣିଆଣିଲା ।

ପୁଷ୍ପ ଓଢ଼ଣାର ଦୁଇ କାନିକୁ ଚିବୁକ ତଳେ ବାମହସ୍ତରେ ଚିପିଧରି ଲଜ୍ଜିତ, ସଂକୁଚିତ ଭାବରେ ଛିଡ଼ାହେଲା ।

ଶୁଭେନ୍ଦ୍ର ହାସ୍ୟମୁଖରେ କହିଲା–

"ଶୁଝାହେବ, ନା ଲଗାନହେବ କାହିଁକି ?"

କହି, ସପ୍ରଶ୍ନ ହାସ୍ୟ ଦୃଷ୍ଟିରେ ତାକୁ ଋହିଁରହିଲା ।

ପୁଷ୍ପ ଟେବୁଲ ପାଖକୁ ଆଉଜିପଡ଼ି ସଲଜ୍ଜ ଆନତ ମୁଖରେ କାରୁଣ୍ୟ ଫୁଟାଇ କହିଲା–

"ବୋଝର ଓଜନ ନ ବୁଝି ସବୁତକ ଆରଜନ୍ମକୁ ରଖିଦେଉଛ, ତମର ଟିକେ ଦୟା ହେଉ ନାହିଁ, କିଛି ହେଲେ କମାଇଦେବାକୁ ?"

ଶୁଭେନ୍ଦ୍ର ହସିଉଠି ପୁଷ୍ପର ହାତକୁ ହଲାଇ ସ୍ଫୂର୍ତ୍ତିର ସହିତ କହିଲା–

"ଆଚ୍ଛା କୁହ, ତା'ହେଲେ କମେଇଦବାର ଉପାୟଟା କ'ଣ ?"

ପୁଷ୍ପର ମୁହଁ ଟିକେ ଉଜ୍ଜ୍ୱଳ ଦେଖାଗଲା । ସେ ସ୍ୱରରେ ପ୍ରସନ୍ନତା ଖେଳାଇ କହିଲା–

"ତା'ହେଲେ କିଛି କରଜ ନେଲେ ତା'ଦେହରୁ କଟିଯିବ, ବୋଝ କମିଯିବ ।"

ଶୁଭେନ୍ଦ୍ର ସ୍ମିତ ମୁଖରେ ତା'ଆଡ଼କୁ ଅନାଇଥିଲା, ଏହି ଅବସରରେ ପୁଷ୍ପକୁ ତା' ମନୋଭାବ ବ୍ୟକ୍ତ କରିବାର ସୁବିଧା ପାଇ ପୁଷ୍ପର ହାତ ଛାଡ଼ିଦେଇ କହିଲା–

"ଯେତେବେଳେ କହିସାରିଲେଣି ନିଶ୍ଚୟ କରଜ ନେବି; କିନ୍ତୁ ଦେଖ, ଯେପରି କଟିଯାଇ ମୋ ଉପରେ ଆଉ ଫାଜଲ ନ ରହେ !"

ପୁଷ୍ପ କଥାଟାକୁ ଗୋଳେଇ ଦେବାପାଇଁ ମ୍ୟାପ୍ ଖଣ୍ଡିକ ଟେବୁଲ୍ ଉପରୁ ଉଠାଇ ଆଣି, ତା' ଉପରେ ଆଖି ବୁଲାଇ ନେଇ କିଞ୍ଚିତ୍ ବିସ୍ମୟରେ ପଚାରିଲା–

"ଏଇଟା ତ ଭାରତବର୍ଷର ମାନଚିତ୍ର, ରେଳରାସ୍ତା ସବୁ ଦିଆ ହୋଇଛି । ଚିଠି ବୋଲି କହୁଥିଲ ?"

କହିସାରି ସପ୍ରଶ୍ନ ଉଦାସ ଦୃଷ୍ଟିରେ ଶୁଭେନ୍ଦ୍ରକୁ ଋହିଁ ଦେଖିଲା, ଶୁଭେନ୍ଦ୍ର ତାକୁ ବିହ୍ୱଳ ଆଖିରେ ଋହିଁଛି ।

ପୁଷ୍ପର ସରମରଞ୍ଜିତ ତନୁ ଭଙ୍ଗିମା ଶୁଭେନ୍ଦ୍ର ଅବିଚଳ ଲୋଲୁପ ଆଖିରେ ଦେଖୁଥିଲା । ମୁହଁକୁ ଋହିଁ ଭାବିଲା, ଏ ମୁହଁ ଖାଲି ସୁନ୍ଦର କହିଲେ ହେବ ନାହିଁ,

ସୌନ୍ଦର୍ଯ୍ୟ ଭିତରେ ଏହାର ସୀମା ନୁହେଁ । ଏହା ଆଶ୍ଚର୍ଯ୍ୟ ବିସ୍ମୟକର, ଅସରନ୍ତି ସଙ୍ଗୀତ । ଏ ସଙ୍ଗୀତ ଶୁଣିବା ପାଇଁ ନୁହେଁ, ଏହା କର୍ଣ୍ଣକୁ ତୃପ୍ତ କରେ ନାହିଁ, ତୃପ୍ତ କରେ ମନକୁ, କ୍ଷିପ୍ତ କରେ ଆଖିକି । ଏହା ଯେପରି ଏକ ସୀମାହୀନ ଛବି । ଏ ଛବି ଦେଖି ବୁଝିହୁଏ ନାହିଁ; କିନ୍ତୁ ଆଖିକୁ ଅତୃପ୍ତ କରିଦିଏ, ଅଧୀର କରିଦିଏ, ଉଦ୍‌ଭ୍ରାନ୍ତ, ଉତ୍‌କ୍ଷିପ୍ତ ପାଗଳ କରିଦିଏ । ତା'ର ନୂତନତ୍ୱ ସରେ ନାହିଁ ।

ଶୁଭେନ୍ଦ୍ରର ବିମୂଢ଼ ଭାବ ଲକ୍ଷ୍ୟକରି ପୁଷ୍ପ କୁତୂହଳୀ ହୋଇ ପଚାରିଲା–

"କ'ଣ ଦେଖୁଛ କି ?"

ଶୁଭେନ୍ଦ୍ର ସେହିପରି ଅବିଚଳ ଥାଇ କହିଲା–

"ତମକୁ ।"

କ'ଣ ଭାବି ପୁଷ୍ପ ମୁହଁଟି ଲଜ୍ଜାରେ ମଳିନ ହୋଇଆସିବା ସଙ୍ଗେସଙ୍ଗେ ଗୋଟିଏ ଅତି ଦୀର୍ଘନିଶ୍ୱାସର ସହ ଚକ୍ଷୁ ଯୁଗଳ ତା'ର ତଳକୁ ନଇଁଆସିଲା ।

ଶୁଭେନ୍ଦ୍ର ଉତ୍ସାହର ସହିତ କ'ଣ କହି ଆସିଲାବେଳେ, ପୁଷ୍ପ ସଶବ୍ଦରେ ହସିଉଠି, ଗାଇଡ୍ ଖଣ୍ଡିକ ଟେବୁଲ୍ ଉପରେ ରଖିଦେଇ କହିଲା–

"ନିଅନ୍ତୁ, ଆପଣଙ୍କ ଚିଠି ନିଅନ୍ତୁ ।"

ଶୁଭେନ୍ଦ୍ର ଅଭିଭୂତ ହେଲାପରି କହିଲା–

"ନାହିଁ ନାହିଁ, ଏଇଟା ଚିଠି ନୁହେଁ, ତାଙ୍କ ନିକଟକୁ ଯିବାକୁ ହେଲେ କେଉଁ କେଉଁ ଷ୍ଟେସନ୍ ପଡ଼ିବ, ସେଇଆ ଦେଖୁଥିଲି ।"

ପୁଷ୍ପ ଟିକେ ମୌନ ରହିବା ପରେ କଣ୍ଠରେ ଚାଞ୍ଚଲ୍ୟ ଖେଳାଇ ପୁଣି ପଚାରିଲା–

"କେଉଁଦିନ ଯିବ ? ଆଚ୍ଛା ଆମକୁ ସାଙ୍ଗରେ ନବ ନା ?"

ବିସ୍ମୟ ସହ ଶୁଭେନ୍ଦ୍ର ପଚାରିଲା–

"ଆମକୁ !"

"ମତେ ଆଉ ମିନିକୁ ।"

କହି ପୁଷ୍ପ ଜିଜ୍ଞାସୁ ଦୃଷ୍ଟିରେ ଶୁଭେନ୍ଦ୍ରକୁ ଚାହିଁଲା । ଶୁଭେନ୍ଦ୍ର ହସିଉଠି କହିଲା–

"ଆରେ ବାପ୍‌ରେ, ତମେ କୁଆଡ଼େ ଯିବ ଏତେ ବାଟ !"

ପୁଷ୍ପ ଆଦର କରି କହିଲା–

"ଆମେ ଏକା କେମିତି ରହିବୁ? ଆଚ୍ଛା, ତମେ ଏତେ ବାଟ ଏକାକୀ ଯିବ, କେତେବେଳେ ଦେହପା..."

ଶୁଭେନ୍ଦ୍ର ଦେଖିଲା, ସତରେ ପୁଷ୍ପ ମୁହଁଟି ଶୁଖିଗଲା । ସେ ଉଚ୍ଛ୍ୱସିତ ଭାବରେ ହସି ଉଠି, ପୁଷ୍ପର ହାତଟିକୁ ଜୋର୍ କରି ଚିପିଧରି କହିଲା–

"ପାଗଳି, ଏତେବାଟ, ପୁଣି ଏ ମାଘମାସ ଶୀତରେ ଏତେ ପଇସା ଖର୍ଚ୍ଚ କରି, ତିନିଦିନ ରେଲରେ ଚଢ଼ି କିଏ ବାହାଘର ନିମନ୍ତ୍ରଣ ରଖିବାକୁ ଯାଏ, ମୁଁ ଯିବି ?"

ମିନି ଦୌଡ଼ି ଆସି ବ୍ୟଗ୍ର କଣ୍ଠରେ କହିଲା–

"ନନା ! ମୁଁ ଯିବି !"

ଶୁଭେନ୍ଦ୍ର ଆଉ ପୁଷ୍ପ ମିନିର ବ୍ୟଗ୍ରତାରେ ହସିପକାଇଲେ । ମିନି ରାଗରେ ତାତିଗଲା । ତା' ମୁହଁରେ ଯେପରି ସିନ୍ଦୂରା ଫାଟିଗଲା ।

ପୁଷ୍ପ ମିନିର ରୋଷ-କଷାୟିତ ଆଖି ଦେଖି, ତାକୁ କୋଳକୁ ଆଣିବାକୁ ଧରିବାରୁ, ମିନି ଜୋର୍ କରି ପୁଷ୍ପ ହାତକୁ ଛିଞ୍ଚାଡ଼ିଦେଇ କମାର ଲୁହା ପିଟିଲା ବେଳେ ତତଲା ଲୁହା ଖଣ୍ଡ ଛିଡ଼ିକିପଡ଼ିଲା ପରି ଯାଇ ଖଣ୍ଡେ ଦୂରରେ ଛିଡ଼ାହେଲା । ଗୋଛାଏ ଚୂର୍ଣ୍ଣକୁନ୍ତଳ ପବନରେ ଖସିଯାଇ ତାର କଅଁଳ ଛନଛନ, ରକ୍ତ ଟଳଟଳ ଗାଲ ଉପରେ ଲିପିହୋଇଗଲା ।

ଶୁଭେନ୍ଦ୍ର ଆଉ ପୁଷ୍ପ ହାସ୍ୟୋଜ୍ଜ୍ୱଳ ଆଖିରେ ଏ ଶୋଭା ତା'ର ଦେଖିଲେ, ସତେ କି ସୁନ୍ଦର ମୁଖଶ୍ରୀ !

ଶୁଭେନ୍ଦ୍ର ସରାଗରେ ଡାକିଲା–

"ଆ, ହେଇ ଦେଖିବୁ ଆ, ତୋତେ କ'ଣ ଆମେ ଛାଡ଼ିଦେଇ ଯାଇଥାନ୍ତୁ ! କା' ଦେହରେ ଦି'ଟା ପ୍ରାଣ ଅଛି ?"

ମିନି ବେକକୁ ହଲାଇହଲାଇ ରାଗ ଆଉ ଅଭିମାନରେ ହସିହସି ପାଖକୁ ପାଖକୁ ଆସିଲା ।

ପୁଷ୍ପ ତାକୁ କୋଳକୁ ଟାଣିନେଲା । ମିନି ଛାଟିପିଟି ହୋଇ ଭ୍ରୂକୁଟି କରି କହିଲା–

"ନାଇଁ ନାଇଁ, ମୁଁ ତମକଥା ସବୁ ଜାଣିଲିଣି । ତମେ ଭାରି ଏକୁଟିଆ ବାଆଁରା ।"

ପୁଷ୍ପ କିନ୍ତୁ ଜୋର୍ କରି ତାକୁ କୋଳରେ ଚାକିଧରିଲା ।

ମିନି ଶାନ୍ତ ହୋଇଯାଇ ପଚାରିଲା–

"କୁଆଡ଼େ ଯିବ, ନନା ?"

"ପୁରୀ ।"

"କେତେବେଳେ ଷ୍ଟେସନକୁ ଯିବା ?"

ଶୁଭେନ୍ଦ୍ର ରାତି ଦୁଇଟା ବେଳକୁ କହି ହସିହସି ପୁଷ୍ପ ମୁହଁକୁ ଚାହିଁଲା ।

ମିନି ବୁଲିପଡ଼ି ପୁଷ୍ପ ମୁହଁକୁ ଚାହିଁ ଉଚ୍ଛ୍ୱସିତ ଆନନ୍ଦରେ କହିଉଠିଲା–

"ନୂଆବୋଉ, ଯିବା !"

ଶୁଭେନ୍ଦ୍ର ପୁଷ୍ପକୁ ଚାହିଁଲା, ପୁଷ୍ପ ଶୁଭେନ୍ଦ୍ରକୁ ଚାହିଁଲା । ଶୁଭେନ୍ଦ୍ର ମନରେ ଯେଉଁ ସନ୍ଦେହ ଥିଲା ପୁଷ୍ପ ପୁଣି କାଳେ କ'ଣ କରିବସିବ ବୋଲି, ତାହା ଦୂର ହୋଇଗଲା । ଶୁଭେନ୍ଦ୍ର ପୁଷ୍ପକୁ ତା' ମନର କଥା କହିବ ବୋଲି କହିପାରିଲା ନାହିଁ ।

ମିନି ପୁଷ୍ପକୁ ଟାଣିଟାଣି ଘେନିଗଲା, "ଆସ ନୂଆବୋଉ, ଲୁଗାପଟା ସଜାଡ଼ିବା ।"

## ତେର

ସେଦିନ ସମସ୍ତ ସନ୍ଧ୍ୟା ଉଦ୍‌ବିଗ୍ନରେ ଛଟପଟ କରି, ବାରଣ୍ଡାର ଗୋଟିଏ ସ୍ତମ୍ଭକୁ ଆଉଜି ଛିଡ଼ା ହୋଇ ପୁଷ୍ପ କାନ୍ଦୁକାନ୍ଦୁ ଭାବୁଥିଲା–ଏ ପର୍ଯ୍ୟନ୍ତ ଯେତେ ଯାହା ଶୁଭେନ୍ଦ୍ର ସଙ୍ଗରେ ଘଟିଯାଇଛି । ଯେତେ କଥାବାର୍ତ୍ତା, ଯେତେ କ୍ରୀଡ଼ାକୌତୁକ, ଯେତେ ଆଖିର ଭାଷା, ସମସ୍ତ ହିଁ ଗୋଟାକ ପରେ ଗୋଟାଏ ଆସି, ତା'ର ବିଗତ ଜୀବନର ସୁଖଦୁଃଖ ସଙ୍ଗରେ ପ୍ରତିଯୋଗୀ ହୋଇ ଛିଡ଼ା ହୋଇ କିପରି ତାକୁ ପରାଜିତ, ଲାଞ୍ଛିତ, ଉପହସିତ କରି ଚାଲିଯାଉଛି, ସେସବୁର ଅଟ୍ଟହାସର ଧକ୍‌କାରେ ତା'ର ହୃଦୟତନ୍ତ୍ରୀ କିପରି ଛିନ୍ନଭିନ୍ନ ହୋଇଯାଉଛି । ମନର ଭାବନା ସୂତ୍ର କିପରି ଖଣ୍ଡବିଖଣ୍ଡ ହୋଇ ମଝିରେ ମଝିରେ ଗଣ୍ଠି ପଡ଼ିଯାଉଛି । ସେ ପ୍ରାଣପଣେ ଯତ୍ନରେ ମଧ ତାହା ଫିଟାଇ ନ ପାରି ଅତି ଅସହାୟ, ନିରୁପାୟ ହୋଇ, ବିକଳ ଭାବରେ ମନେମନେ କାନ୍ଦିଉଠୁଛି । ତା'ର ଚିନ୍ତାମ୍ଳାନ ଗଣ୍ଡ ଦେଇ ନୀରବ ଅଶ୍ରୁ ଧାରଧାର ହୋଇ ବହିଯାଉଛି ।

ମିନି ଆସି ପଛରୁ ଧରିପକାଇ ପଚାରିଲା–

"ନୂଆବୋଉ, ଲୁଗାପଟା ସଜାଡ଼ିବ ପରା ? ଆଉ କେତେବେଳେ, କେତେଥର କହିବି ମ ?"

ଆଖିରୁ ଲୁହ ପୋଛୁପୋଛୁ ପୁଷ୍ପ ଅନ୍ୟମନସ୍କ ଭାବରେ କହିପକାଇଲା–

"ହଁ, ମୁଁ ସେତିକିବେଳେ ସଜାଡ଼ିଦେବି ଯେ ।"

କହିସାରି ତା'ର ହୋସ୍ ହେଲା । ସେ ମିନିର ବାହୁଟିକୁ ଧରି ପୁଣି କହିଲା–

"ଯା, ନନାଙ୍କୁ କହିବ ଯା ।"

ଶୁଭେନ୍ଦ୍ର ବ୍ଲାଙ୍କେଟ୍ ଘୋରେଇହୋଇ ଶୋଇଥିଲା । ମିନି ଦୌଡ଼ିଯାଇ ଉଚ୍ଛନ ହୋଇ କହିଲା–

"ନନା ନନା, ଶୋଇଛ କ'ଣ ମ ? କ'ଣ ଜିନିଷ ସଜାଡ଼ିବ ପରା ?"

ଶୁଭେନ୍ଦ୍ର ବୁଝିପାରି, ତାକୁ ଭୁଲାଇବା ପାଇଁ କହିଲା–

"ହଁ, ତୁ ଯା ଆଗେ ଶୋଇପଡ଼, ରାତିଅନିଦ୍ରା ହେବୁ ଯେ ! ଯା, ଗଲାବେଳେ ମୁଁ ଉଠେଇବି, ବାଆା ହେରିକା ଜିନିଷ ସଜାଡ଼ିଦେବେ ।"

ମିନି ଫେରିଆସୁଆସୁ ଦ୍ୱାରମୁହଁରେ ପୁଷ୍ପକୁ ଭେଟି ଶୀତରେ ଥରଥର ହେଲାପରି କଥାକୁ ଲମ୍ୱାଇଲମ୍ୱାଇ କହିଲା–

"ନୂଆବୋଉ ଗୋ, ଚଞ୍ଚଳ ଆସ ଶୋଇପଡ଼ିବ, ନଇଲେ ରେଳରେ ବସି ଢୋଳଉଥିବ ।"

ମିନିର କଥାରେ ଏତେ ଦୁଃଖ ଭାବନା ଭିତରେ ମଧ ପୁଷ୍ପ ନ ହସି ରହିପାରିଲା ନାହିଁ ।

ମିନି ସେହିପରି 'ହସୁଥା' କହି ଦୌଡ଼ିଦୌଡ଼ି ଚାଲିଗଲା ।

ପୁଷ୍ପ ଧୀରେଧୀରେ ଶୁଭେନ୍ଦ୍ର ନିକଟକୁ ଆସି, ଖଟ ପାଖରେ ଛିଡ଼ା ହୋଇ ଶାନ୍ତ ସ୍ୱରରେ କହିଲା–

"ମୁଣ୍ଡ ବଥଉଥିଲା ପରା, ଟିକେ ଚିପିଦେବି ?"

ଶୁଭେନ୍ଦ୍ର ପୁଷ୍ପ କଥାହିଁ ଭାବୁଥିଲା । ମୁହଁରୁ ଲୁଗା କାଢ଼ି ପୁଷ୍ପକୁ ଚାହିଁ କହିଲା–

"ତମକୁ କ'ଣ ଶୀତ ହେଉ ନାହିଁ ? ଯା, ଶାଲ୍‌ଟା ଦେହରେ ପକେଇଦେଇ ଆସ, ନଇଲେ ସ୍ଲିପ୍‌ଓଭରଟା ଦେହରେ ଗଳେଇଦେଇ ଆସ ।"

"ନାଇଁ, ମତେ ଶୀତ ହଉନି, ଦେଖା ତମ ମୁଣ୍ଡ ଟିକେ ଚିପିଦିଏ ।"

ଏହା କହି ପୁଷ୍ପ ଶୁଭେନ୍ଦ୍ରର ପାଖରେ ବସି ତା' ମୁଣ୍ଡର ବାଳଗୁଡ଼ିକ ଧୀରେ ଧୀରେ ଟାଣିଦେଲା ।

କ୍ଷଣକ ପରେ ଶୁଭେନ୍ଦ୍ରର ହାତ ତକିଆ ଉପରେ ପଡ଼ିଲା, ତାକୁ ଓଦାଓଦା ଲାଗିଲା । ସେ ଦୁଃଖିତ ହୋଇ ପଚାରିଲା—

"ତମେ କାନ୍ଦୁଛ ?"

ପୁଷ୍ପ ପ୍ରକୃତରେ କାନ୍ଦୁଥିଲା । ହଠାତ୍ କ'ଣ କହିବାକୁ ଯାଇ ତା' ତଣ୍ଟି ବାନ୍ଧି ହୋଇଗଲା । ସେ ଛେପ ଢୋକିନେଇ କହିଲା—

"ନାଇଁ, ଶୀତଦିନେ ଏ ସୁଲୁସୁଲିଆ ପବନରେ ମୋ' ଆଖିରେ ପାଣି ହୁଏ ।"

ଶୁଭେନ୍ଦ୍ର କ୍ଷୁଣ୍ଣ ହୋଇ କହିଲା—

"ପୁଷ୍ପ, କେହି କାହାର ଅନ୍ତର ବ୍ୟଥା ବୁଝେନା, କିନ୍ତୁ ତମ ଆଖିରେ ଲୁହ ମୁଁ ସହିପାରେନା । ତମ ଆଖିରେ ଲୁହ ଦେଖିଲେ ମତେ ସବୁ ବିଷପରି ବୋଧହୁଏ ।"

କହିସାରି, କିଛି ସମୟ ମୌନ ରହି, ପୁଷ୍ପକୁ ତା'ର ମନକଥା ଜଣାଇବାର ଉପଯୁକ୍ତ ସମୟ ମନେକରି ଏହିପରି ଭାବରେ କଥାଟି ଆରମ୍ଭ କଲା—

"ପୁଷ୍ପ, ତମକୁ ମୋ' କଥା ଭଲ ଲାଗିବ କି ନାଇଁ, ମୁଁ କହି ପାରିବି ନାହିଁ । କେବଳ ମୁଁ ଯାହା କହୁଛି, ଭଲ ଭାବରେ ଭାବି ଦେଖ ।"

ପୁଷ୍ପ କଥାଟି ଶୁଣିବାକୁ ଉଦ୍‌ଗ୍ରୀବ ହୋଇ ରହିଲା ।

ଶୁଭେନ୍ଦ୍ର କହିଲା—

"ଯାହା ଘଟିଗଲାଣି, ସେଥିପାଇଁ ଭାବିବା ନିଷ୍ପ୍ରୟୋଜନ । ତମର ବର୍ତ୍ତମାନ ଏକମାତ୍ର କର୍ତ୍ତବ୍ୟ ବିବାହ କରିବା । ମୁଁ ମୋ' ମନେମନେ ତମ ପାଇଁ ଗୋଟିଏ ପାତ୍ର ଠିକ୍ କରିଛି । ସେ ମୋ' ସାଙ୍ଗରେ କଲେଜରେ ପଢୁଥିଲା । ଆମେ ଏକାବର୍ଷ ପାସ୍ କରିଛୁ । ଆଉ ସେ ଦେଖିବାକୁ ଠିକ୍ ମୋରି ପରି । ଖୁବ୍ ଧନୀ ମଧ୍ୟ । ତମେ କେବଳ ମତ ଦେଲେ ମୁଁ ତାକୁ ଏଠାକୁ ଡାକିପଠାଇବି ।"

ଶୁଭେନ୍ଦ୍ରର କଥା ଶୁଣି ପୁଷ୍ପର ମୁହଁ ପାଉଁଶବର୍ଣ୍ଣ ହୋଇଗଲା । ତାକୁ ଜଣାଗଲା କିଏ ଯେପରି ତା' ଛାତି ଉପରେ ମୁଦ୍‌ଗର ପ୍ରହାର କରୁଛି ।

କିନ୍ତୁ ଅନ୍ଧକାର ଭିତରେ ଶୁଭେନ୍ଦ୍ର କିଛି ଦେଖିପାରିଲା ନାହିଁ । ପୁଷ୍ପଠାରୁ ଉତ୍ତର ପାଇବା ଆଶାରେ କିଛି ସମୟ ଅପେକ୍ଷା କରି ପୁଣି କହିଲା—

"ତମେ ମନେକର ନାହିଁ ଯେ ମୁଁ ତମକୁ ଗୋଟିଏ ଅପଦାର୍ଥ ହାତରେ ଦେବି । ପ୍ରାଣ ଥାଉଥାଉ ଏକଥା କେବେହେଁ କରିପାରିବି ନାହିଁ । ତୁମକୁ ମୁଁ କେତେ ଭଲପାଏ, ଜାଣିପାରିବ ନାହିଁ । ମୁଁ ଯେଉଁଠାରେ ବିବାହ କରିପାରିବି, ଏହିପରି ସ୍ଥାନରେ ଦେବି ।"

ଏ କଥାରେ ପୁଷ୍ପର ଯେଉଁ ଦୁଃଖ ହେଲା, ତା' କେବଳ ତା'ର ଅନ୍ତର୍ଯ୍ୟାମୀ ଜାଣଲେ; କିନ୍ତୁ ଘୋର ଅଭିମାନରେ ତା'ର ଅନ୍ତର ଶୁଭେନ୍ଦ୍ର ପ୍ରତି ପୂର୍ଣ୍ଣ ହୋଇଗଲା । ତା'ର ନାରୀମନ ବୁଝିଲା ନାହିଁ ଶୁଭେନ୍ଦ୍ରର ଜାତି, କୁଳ, ମାନସମ୍ମାନ କଥା–ତା'ର ଆଉ ଶୁଭେନ୍ଦ୍ର ଭିତରେ ବ୍ୟବଧାନର କଥା । ଏ ସହଜ ପାତ୍ରାପାତ୍ର ଯୋଗ୍ୟାଯୋଗ୍ୟ ଜ୍ଞାନ ତା'ର ରହିଲା ନାହିଁ । ସେ କେବଳ ମନେମନେ ଭାବିଲା–ମୁଁ କଣ ଏଡ଼େ ଅସୁନ୍ଦରୀ ଯେ ୟାଙ୍କର ଯୋଗ୍ୟା ହେଲି ନାହିଁ? ମତେ ଗୋରୁଗାଇ ପରି ଯାହାକୁ ଇଚ୍ଛା ଦେଇଦେବେ! ସେ ଯେପରି ତା' ନାରୀତ୍ୱ ଉପରେ ଶକ୍ତ ଆଘାତ ଅନୁଭବ କଲା । କିଛି ନ କହି ନୀରବ ରହି ଅଭିମାନ ଆଉ ଦୁଃଖରେ ସେ ମନେ ମନେ କାନ୍ଦିବାକୁ ଲାଗିଲା ।

ଶୁଭେନ୍ଦ୍ର ପୁଷ୍ପକୁ ନୀରବ ଦେଖି ପୁଣି କହିଲା–

"ଏଥିରେ କିଛିହିଁ ବାଧ୍ୟବାଧକତା ନାହିଁ । ତମେ ଯାହା ଇଚ୍ଛା କରିବ ତାହାହିଁ ହେବ ।"

ଶୁଭେନ୍ଦ୍ର ଏହି ସମୟରେ ବୁନ୍ଦାଏ ଗରମ ପାଣି ତା' କପାଳ ଉପରେ ପଡ଼ିବାର ଅନୁଭବ କରି ବିଚଳିତ ହୋଇପଡ଼ିଲା । କଥାଟା ଫିଟାଇ କହିଦେବା ପାଇଁ ଉଦ୍ୟତ ହୋଇ ପୁଣି ଅଟକିଗଲା । ଭାବିଲା, ପୁଷ୍ପ ବିବାହ କରିବ କି ନାହିଁ ଏକଥା ନ ବୁଝି ସାରି, ସେ କିପରି ବା ନିଜକୁ ତା' ଆଗରେ ମୁକ୍ତ କରିଦେବ? ଏଥିରେ ପୁଷ୍ପର ଧାରଣା ତା' ପ୍ରତି କ'ଣ ହେବ? ପ୍ରକାଶ୍ୟରେ କହିଲା–

"ସତେ ପୁଷ୍ପ, ତମେ କାନ୍ଦୁଛ, ମତେ କ୍ଷମା କର, ମୁଁ ନଜାଣି ତମ ମନରେ ଦୁଃଖ ଦେଲି! କେବଳ ତମର କିପରି ଭଲ ହେବ, ସେହି କଥା ଭାବି ମୁଁ କହୁଥିଲି । ତମେ କାନ୍ଦନା, ମୁଁ ସହି ପାରିବି ନାହିଁ। ମୋର ବଡ଼ ପାଟିକରି କାନ୍ଦିଉଠିବାକୁ ଇଚ୍ଛା ହେଉଛି । ସବୁଠାରୁ ମୋର ବଡ଼ ଦୁଃଖ ହେଉଛି, ତମ ଆଖିରେ ପାଣି ଦେଖିଲେ ।"

ପୁଷ୍ପ ବହୁ କଷ୍ଟରେ ନିଜକୁ ଶାନ୍ତ କରି ଈଷତ୍ କ୍ରନ୍ଦନଜଡ଼ିତ କଣ୍ଠରେ କହିଲା–

"ନାଇଁ, ମୁଁ କାନ୍ଦୁନାଇଁ । ମୋର ଆଉ କାନ୍ଦିବାକୁ କ'ଣ ଅଛି ଯେ ମୁଁ କାନ୍ଦିବି?"

ପୁଷ୍ପର ଏକଥା ଶୁଭେନ୍ଦ୍ରର ମର୍ମସ୍ଥଳରେ ଯାଇ ବାଜିଲା–ସେ ମନେମନେ ଅସହ୍ୟ ବେଦନାରେ ବିକଳ ହୋଇଉଠିଲା । ସେହି ଯନ୍ତ୍ରଣା ଭିତରେ ସେ କହିଲା–

"ପୁଷ୍ପ! ମୁଁ ଯେ କି ଦୁଃଖ ଭୋଗ କରୁଛି ତା' ତମେ ବୁଝିବ ନାହିଁ । ମୁଁ ତମକୁ ମୋର ନିଜର ପ୍ରାଣ ଅପେକ୍ଷା ବେଶି ଭଲପାଏ । ତମରି ଶପଥ କରି କହୁଛି, ମୋ କଥାରେ ତମେ ବିଶ୍ୱାସ କର । ମୁଁ ତମପାଇଁ ନ କରିପାରିବି, ଦୁନିଆରେ ଏପରି

କିଛି କାର୍ଯ୍ୟ ନାହିଁ । ଏହି ମୁହୂର୍ତ୍ତରୁ ମୁଁ ମୋର ସର୍ବସ୍ୱ ତମକୁ ଦାନ କଲି । ତମେ ମତେ କୁହ, ତମ ପାଇଁ କ'ଣ କଲେ ତମ ମନ ଅନୁସାରେ ହେବ, ତମେ ସୁଖୀ ହୋଇପାରିବ । ଯା, ଏତେ ଶୀତରେ ଆଉ ଖାଲିଦେହରେ ବସ ନାହିଁ । ଶୋଇଶୋଇ ଭାବିବ, ତମେ ଯାହା କହିବ ମୁଁ ସେଇଆ କରିବି ।"

ପୁଷ୍ପ ଭାବିଲା–

ତା'ର ସାହଚର୍ଯ୍ୟ ଯେତେବେଳେ ଶୁଭେନ୍ଦୁ ତ୍ୟାଗ କରିବାକୁ ଯାଉଛି, ଆଉ ତାକୁ ସେ ବିରକ୍ତ କରିବ କାହିଁକି ?

ତା'ର ସର୍ବଂସହା ନାରୀହୃଦୟ, ନାରୀତ୍ୱର ଉପେକ୍ଷା ସହିପାରିଲା ନାହିଁ । ସେ ଧୀରେଧୀରେ ଉଠି ଛିଡ଼ାହେଲା । କ'ଣ କହିବାକୁ ଭାବି ଭଗ୍ନହୃଦୟର ନୈରାଶ୍ୟ ଭିତରେ ସ୍ମୃତି ତା'ର ହଜିଗଲା, କିଛି କହିପାରିଲା ନାହିଁ । କିଛିକ୍ଷଣ ପରେ ଶୂନ୍ୟ ମନରେ ଓଢ଼ଣାଟିକୁ ଓଠତଳେ ଚିପି ଧରି, ନୀରବରେ ଅଶ୍ରୁପାତ କରି ଶକ୍ତିଶୂନ୍ୟ ପଦକ୍ଷେପରେ ଘର ଭିତରୁ ବାହାରିଆସିଲା ।

ଶୁଭେନ୍ଦୁ ଦୁର୍ଜ୍ଞେୟ ନାରୀ ମନୋଭାବର ଅନୁଧାବନ କରିପାରିଲା ନାହିଁ ।

## ଚଉଦ

ଶୀତଦିନ ।

ସମସ୍ତେ ଚଞ୍ଚଳ ଶୋଇପଡ଼ିଲେ ।

ପୁଷ୍ପ ଟେବୁଲ ପାଖରେ ବସି ଖଣ୍ଡେ ଚିଠି ଲେଖୁଥିଲା । ଲେଖିସାରି ଖଣ୍ଡେ ପୁଳିନ୍ଦାରେ ଭଲ ଭାବରେ ବନ୍ଦ କରି ରଖିଲା । ଦେହରୁ ହାତରୁ ମୁଦି ଆଉ ଅଳଙ୍କାର କାଢ଼ି ଗୋଟିଏ ଛୋଟ ବାକ୍ସ ମଧ୍ୟରେ ରଖି ତାଲା ଦେଲା । ଟେବୁଲ ଭିତରେ ଡ୍ରୟାରରୁ ଖଣ୍ଡିଏ କାଗଜ ଆଣି ପଦାରେ ରଖି, ବାକ୍ସଟିକୁ ଡ୍ରୟାର ଭିତରେ ରଖି ଋବି ଦେଲା । ଭାରି ଶୀତ ହେଉଥିଲା, ତା'ର ମନେପଡ଼ିଲା ଜଣେ ଦାସୀର ଖଣ୍ଡେ ମୋଟା ମଇଳା ଋଦର ତା' ଅଲଗୁଣାରେ ପଡ଼ିଛି । ଟର୍ଚ୍ଚଟି ଧରି ଧୀରେଧୀରେ ଖୁବ୍ ସାବଧାନର ସହିତ ଯାଇ ତାହା ଘେନିଆସି ରଖିଲା । ଡ୍ରୟର ଭିତରୁ କାଢ଼ିଥିବା କାଗଜ ଖଣ୍ଡିକ ଅଣ୍ଟାରେ ମାରି, କ'ଣ ଭାବି ମିନିର ବିଛଣା ପାଖକୁ ଆସି ତାକୁ ମୁହୂର୍ତ୍ତେ କାଳ ଋହିଁଲା । ତା' ଆଖିରୁ ଲୁହ ଧାରଧାର ହୋଇ ଗଡ଼ିପଡ଼ିଲା । ଆଖି ପୋଛି ଦେଇ ଯାଇ ଶୁଭେନ୍ଦୁର ଖଟ ପାଖରେ

ପହଞ୍ଚିଲାକ୍ଷଣି, ଶ୍ରାବଣର ଧାରା ପରି ତା'ର ସମସ୍ତ ରକ୍ତ ଯେପରି ପାଣି ହୋଇ ତା' ଆଖିବାଟେ ଅଜାଡ଼ି ହୋଇପଡ଼ିଲା । କିଛି ସମୟ ସେ ରହିଁପାରିଲା ନାହିଁ । ବହୁ କଷ୍ଟରେ ଶୋକ ସଂବରଣ କରି ଧୀରେଧୀରେ ଖଟ ଉପରେ ଶୁଭେନ୍ଦ୍ରର ପାଦ ପାଖରେ ମୁଣ୍ଡ ରଖି ମନେମନେ କହିଲା–

("ହେ ଦେବତା, ହେ ମୋର ପ୍ରାଣ, ହେ ମୋର ଇହ ଆଉ ପରକାଳ, ତମକୁ ଛାଡ଼ି ମୁଁ ଏ ଜନ୍ମ ପାଇ ଯାଉଛି । ତମେ ଆହୁରି ମହାନ, ଆହୁରି ସୁନ୍ଦର ହୋଇ ବଞ୍ଚି ରହିଥାଅ । ଏ ଅଭାଗିନୀକୁ ମନରୁ ପୋଛିପକାଅ ।")

ସେ ଆହୁରି ଟିକେ ଛିଡ଼ା ହୋଇ, ଶୁଭେନ୍ଦ୍ର ପାଦ ପାଖରେ ଲେଖିଥିବା ଚିଠି ଖଣ୍ଡକ ଓ କଞ୍ଚିକାଠିତକ ରଖିଦେଇ ପୁଣି ତା' ଶୋଇବାଘରକୁ ଫେରିଆସି ମିନିର ସୁପ୍ତ ସୁନ୍ଦର ଗଣ୍ଡରେ ଗୋଟିଏ ଚୁମ୍ବନ ଦେଇ ଉପରେ ଘଡ଼ିକୁ ରହିଁଲା । ସାଢ଼େ ଗୋଟାଏ ବାଜିବାକୁ ପାଞ୍ଚମିନିଟ୍ ଅଛି । ଭାବିଲା–

"ଖୁବ୍ ବେଳ ଅଛି । ସାଢ଼େଦୁଇଟାରେ ଗାଡ଼ି ଆସିବ ।"

ପୁଷ୍ପ ଗେଟ୍ ପାର୍ ହୋଇ, ଋଦରଟି ଆପାଦମସ୍ତକ ଘୋଡ଼େଇ ହୋଇପଡ଼ିଲା । କେବଳ ମାତ୍ର ପାଦ ଦୁଇଟି ଆଉ ଆଖି ଦୁଇଟି ବ୍ୟତୀତ ଆଉ କିଛି ଦିଶୁ ନଥିଲା ।

ଅଳ୍ପ, ଦୁଇ ପଦିକା ବାଟ ଆସିଲେ ମୋଡ଼ ଉପରକୁ ଠିକ୍ ସିଧା ଷ୍ଟେସନ ଦିଶୁଛି । ବାଟ ମାଇଲିଏକରୁ କମ୍ ହେବ ।

ପୁଷ୍ପ ଅନେକ ଥର ମଟରରେ ଶୁଭେନ୍ଦ୍ର ଓ ମିନି ସଙ୍ଗରେ ଷ୍ଟେସନକୁ ବୁଲିବାକୁ ଆସି, ଛୋଟିଆ ଷ୍ଟେସନ୍‌ଟିକୁ ପୁଙ୍ଖାନୁପୁଙ୍ଖ ଭାବରେ ଦେଖିନେଇଥିଲା ଓ ଅନେକ ସମୟ ମଧ୍ୟ ରେଳ ଆସିବା, ଟିକଟ କାଟିବା ପ୍ରଭୃତି ବସି ମନୋଯୋଗ ସହକାରେ ଦେଖୁଥିଲା । ସେ ଆଉ ସେ ବିଷୟରେ କିଛି ନ ଭାବି ବିଫଳ ଜୀବନର ଶେଷ ପରଦା ଉନ୍ମୋଚନ କରି ଅନ୍ଧକାର ଭବିଷ୍ୟତର ରଙ୍ଗମଞ୍ଚ ଉପରକୁ ବାହାରିପଡ଼ିଲା ।

ସଡ଼କ ଉପରେ ପାଦ ଦେଲାକ୍ଷଣି ପାଦ ତା'ର ଥରିଉଠିଲା । ସେ ଆଉ ପାଦ ଉଠାଇ ପାରିଲା ନାହିଁ । ସତେ ଯେପରି ମିନିର ଅଭିମାନ ଛନଛନ ସୁନ୍ଦର ମୁହଁଟି ତା' ଆଖି ଆଗରେ ଭାସିଗଲା । ସେ ଚମକିପଡ଼ିଲା । ମୁହୂର୍ତ୍ତେ ମାତ୍ର ମମତାର ଗୋଟାଏ କ୍ଷୀଣ ମୋହ ତା'ର କ୍ଷତବିକ୍ଷତ ମନ ଉପରେ ଭାସିଯାଇ ଗୋଟିଏ ପତଳା ଦୁର୍ବଳତାର ଛାଇ ପକାଇଦେଲା; କିନ୍ତୁ ପରମୁହୂର୍ତ୍ତରେ ସେ ଶେଷଥର ପାଇଁ ତା'ର ମନର ସମୁଦାୟ ଶକ୍ତି ନିଯୋଜିତ କରି କ୍ଷିପ୍ର ପଦରେ ଅଗ୍ରସର ହେଲା ।

ପୁଷ୍ପ ଜାଣେ, ଏ ରାସ୍ତା ଅତି ନିରାପଦ । କିଛି ବାଟ ଗଲାପରେ ଦେଖିଲା, କେତେଗୁଡ଼ିଏ ଲୋକ ଷ୍ଟେସନ ଅଭିମୁଖରେ ଯାଉଛନ୍ତି । ତା'ର ସରଳ ରୁକ୍ଷ ଦେହ ତା ଚାଲିବାରେ କୌଣସି ବାଧା ହେଉ ନ ଥାଏ । ସେ ଖୁବ୍ ସ୍ଫୂର୍ତ୍ତିରେ ଚାଲୁଥାଏ । ବାଟରେ ଲୋକମାନେ କଥାବାର୍ତ୍ତା ହେଲେ–

"କେଡ଼େ ଚଞ୍ଚଳ ଚାଲୁଛି ମ !"

ଷ୍ଟେସନରେ ପହଞ୍ଚି ପ୍ଲାଟଫର୍ମରେ ତା'ର ଖଣ୍ଡେ ପରିଚିତ ପଥର ଉପରେ ବସିପଡ଼ିଲା । କେହି କିଛି ଲକ୍ଷ୍ୟ କଲେ ନାହିଁ । ସେ କେବଳ କେହି ତା'ର ଅନୁସନ୍ଧାନ କରୁଛି କି ନାହିଁ ଲକ୍ଷ୍ୟ କରୁଥିଲା ।

ଖୁବ୍ ଅଳ୍ପ ସମୟ ପରେ ଟିକଟ କାଟିବାର ଘଣ୍ଟି ଦିଆଗଲା ।

ଛୋଟ ଷ୍ଟେସନ । ଯାତ୍ରୀ ମଧ୍ୟ କମ୍ । ସମସ୍ତେ ଆଗଭର ହୋଇ ଗୋଟାକ ଉପରେ ଗୋଟିଏ ପଡ଼ି ଟିକଟ କାଟିଲେ ।

ପୁଷ୍ପ ଶେଷକୁ ଉଠି ଧୀରେ ଧୀରେ ଯାଇ ଝରକା ଉପରେ କାଗଜ ଖଣ୍ଡିକ ଥୋଇଦେଇ କଣ୍ଠକୁ ଟିକେ ମୋଟ କରି କହିଲା–'ପୁରୀ' ।

ନିଜର କଣ୍ଠସ୍ୱରରେ ନିଜେ ମନେମନେ ହସି ଉଠିଲା–

ଟିକଟ ଆଉ ପଇସା ନେଲାବେଳେ ପୁଷ୍ପର ହାତଟିକୁ ଦେଖି ଟିକଟ ଦେଲା ବାବୁଟି ତା' ମୁହଁକୁ ଚାହିଁଲା; କିନ୍ତୁ କିଛି ଦେଖିପାରିଲା ନାହିଁ । କେବଳ ଗୋଟାଏ ସନ୍ଦେହର ରେଖା ତା'ର ଭ୍ରୂକୋଣରେ ଉଙ୍କିମାରି ମିଳେଇଗଲା ।

ପୁଷ୍ପ ମୁହଁ ଉପରେ ଏପରି ଭାବରେ ଚାଦରଟିକୁ ଟାଣିରଖିଥିଲା ଯେ କେହି ଯେପରି ଦେଖିପାରିବେ ନାହିଁ । ଯେତେବେଳେ ସେ ଯାଇ ଗୋଟିଏ ଲେଡିଜ୍ କମ୍ପାର୍ଟ୍‌ମେଣ୍ଟରେ ବସି ଗାଡ଼ି ଚାଲିଲା ବେଳେ ଷ୍ଟେସନ୍ ଆଡ଼କୁ ଅନାଇଦେଲା, ଦେଖିଲା, ସେହି ଟିକଟ୍ ବାବୁଟି ତାହା ଆଡ଼କୁ ନିର୍ନିମେଷ ନୟନରେ ଚାହିଁରହିଛି ।

ଗାଡ଼ି ଛାଡ଼ିଲା–

ପୁଷ୍ପର ମନ ଅସ୍ଥିର ହୋଇଉଠିଲା । ତା'ର ତଳକୁ ଡେଇଁପଡ଼ିବାକୁ ଇଚ୍ଛା ହେଲା । ପୁଣି ପର ମୁହୂର୍ତ୍ତରେ ମନେପଡ଼ିଲା ତା'ର ଶୁଭେନ୍ଦ୍ର କଥା । ମତେ ବଞ୍ଚାଇ, ଜୀବନରେ ଅମୃତର ସନ୍ଧାନ ଦେଇ ପୁଣି ବଞ୍ଚିତ କଲ କାହିଁକି ? ଯଦି ଏହି କଥା ମନରେ ଥିଲା, ତା' ହେଲେ ଏତେ ପ୍ରାଣପାତ ପରିଶ୍ରମ, ତ୍ୟାଗ ବୃଥା କଲ କାହିଁକି ? ମୁଁ ମରି ଯାଇଥିଲେ ତ ତରିଯାଇଥାନ୍ତି । ମୋର କେହି ନାହିଁ । ବାପ, ମା' ମତେ

ଆଉ ସ୍ଥାନ ଦେବେ ନାହିଁ । ସମାଜ ଆଉ ସ୍ଥାନ ଦେବ ନାହିଁ । ମୋର ଛିଡ଼ାହେବାର ସ୍ଥାନ ବି ନାହିଁ । ଅଛି କେବଳ ନିର୍ଯ୍ୟାତନା, କଳଙ୍କ, ଆଉ ଲଜ୍ଜା, ଦେହ ଆଉ ତା'ର ବିପୁଳ ରୂପଯୌବନ । ଏହାକୁ ଧରି ମୁଁ ଯିବି କୁଆଡ଼େ ? ସବୁ ବାଟ ତ ମୋ' ପାଇଁ ବନ୍ଦ । ଜଗତରେ ବଞ୍ଚିବାର ଉପାୟ ଅଛି; କିନ୍ତୁ ମୋ' ପାଇଁ ନାହିଁ । କ'ଣ କରିବି ? ଏତେ ହୀନ ଭାଗ୍ୟ ଭିତରେ ଏ ଯୌବନକୁ ମୁଁ ଲୁଚାଇରଖିବି କେଉଁଠି । କାହିଁକି ତମେ ମତେ ବଞ୍ଚିବାର ଇଚ୍ଛା ଦେଲ ? କାହିଁକି ମୁଁ ତମକୁ ବଞ୍ଚିବି ବୋଲି ଲେଖିଦେଇଆସିଲି ? କିପରି ବଞ୍ଚିବି ? ମୋ'ପରି ହତଭାଗିନୀର ବଞ୍ଚିବାରେ ଲାଭ କ'ଣ ? ଆଉ ଥରେ ତ ତମକୁ ଦେଖିପାରିବି ନାହିଁ ।

ଏହି କଥା ଭାବୁଭାବୁ ପୁଷ୍ପର ଆଖି ଆଗରେ ଶୁଭେନ୍ଦ୍ରର ସୌମ୍ୟ ମୂର୍ତ୍ତି ଭାସିଉଠିଲା । ତା'ର ଉଦ୍‌ବେଳିତ ଅଶ୍ରୁରାଶି ଝରଝର ହୋଇ ଗଡ଼ିପଡ଼ିଲା । ବଡ଼ପାଟି କରି କାନ୍ଦିବାକୁ ତା'ର ଇଚ୍ଛା ହେଲା; କିନ୍ତୁ ଏତେ ଲୋକଙ୍କ ଆଗରେ ସେ କାନ୍ଦିପାରିଲା ନାହିଁ । ଶୋକର ନିଦାରୁଣ ଆଘାତ ଛାତି ଭିତରେ ତା'ର ବାଜିବାକୁ ଲାଗିଲା ବାରମ୍ବାର । ସେ ଛାତି ଚିପିଧରି ଝରକା ଉପରେ ବାହାରକୁ ଚାହିଁରହିଲା ।

ଯେତେବେଳେ ଭୋର୍‌ରୁ ପୁରୀ ଷ୍ଟେସନ୍‌ରେ ଗାଡ଼ିରୁ ଓହ୍ଲାଇ ଗୋଟିଏ ଯାତ୍ରୀଦଳଙ୍କ ପଛେ ପଛେ ଆସି ବାହାରେ ଛିଡ଼ାହେଲା, ତାକୁ ଚାରିଆଡ଼ ଅନ୍ଧକାର ଦିଶିଲା । ସେ କୁଆଡ଼େ ଯିବ, କ'ଣ କରିବ, କିଛି ବୁଦ୍ଧିବାଟ ପାଇଲା ନାହିଁ । କେତେ ଗାଡ଼ିବାଲା, କେତେ ରିକ୍‌ସାବାଲା, କେତେ ପଣ୍ଡା-ଗୁମାସ୍ତା ଆସି ତା'ର ଚାରିପାଖ ଘେରି ତାକୁ ଅସ୍ତବ୍ୟସ୍ତ କରିପକାଇଲେ । ଜୀବନରେ ତ ସେ କେବେ ଏପରି ଅବସ୍ଥାରେ ପଡ଼ିନଥିଲା, ଭୟରେ ତା'ର ତଣ୍ଟି ଶୁଖିଗଲା । ଯେଉଁ ଦଳଙ୍କ ପଛରେ ସେ ପଦାକୁ ଆସିଥିଲା, ସେମାନେ କୌଣସିମତେ ପଣ୍ଡାଙ୍କ ହସ୍ତରୁ ଆତ୍ମରକ୍ଷା କରି ଧୀରେଧୀରେ ଅଗ୍ରସର ହେଲେ ଦେଖି ଶୋକୋଚ୍ଛ୍ୱାସରେ ଅଧର ଦୁଇଟି ତା'ର ବାରମ୍ବାର କମ୍ପିବାକୁ ଲାଗିଲା । ଆଖିପତାକୁ ଠେଲିଦେଇ ସଜୋରରେ ନୀରବ ଅଶ୍ରୁବାରି ଝରଝର ହୋଇ ତା'ର ଗଣ୍ଡ ଉପରେ ଝରିପଡ଼ିଲା । ପୃଥିବୀ ଯେପରି ଭୂମିକମ୍ପରେ ଦୁଲୁକି ଉଠି ଘରଦ୍ୱାର ଗଛବୃକ୍ଷ ସବୁ ଭାଙ୍ଗିପକାଇଲା । ସେ ଛିଡ଼ା ହୋଇଥିବା ସ୍ଥାନ ସତେ ଯେପରି ଚଡ଼୍‌ଚଡ଼୍ ହୋଇ ଫାଟି ଆସିଲା, ଏହିକ୍ଷଣି ସେ ବସୁଧା ଭିତରେ ପୋତି ହୋଇଯିବ । ଅସ୍ଫୁଟ ବ୍ୟାକୁଳ କଣ୍ଠରେ ପୁଷ୍ପ କହିଉଠିଲା—

"ମା'ଲୋ !"

ଏହିପରି ବେଳରେ 'ହଟ୍‌ଯାଓ' 'ହଟ୍‌ଯାଓ' ଶବ୍ଦରେ ଜନତା ତା' ନିକଟରୁ ଅପସାରିତ ହେଉଥିବାର ଦେଖି, ପୁଷ୍ପ କୁଆଡ଼େ ଯିବ ବୋଲି ଇତସ୍ତତଃ କରୁକରୁ କିଏ ଆସି ତା'ର ଗଦରରେ ଆବୃତ ବାହୁଟିକୁ ଧରିପକାଇ, ବାଷ୍ପରୁଦ୍ଧ ସ୍ୱରରେ ଡାକିଲା–

"ପୁଷ୍ପ !"

ପୁଷ୍ପ ହଠାତ୍ ଚମକିପଡ଼ିଲା; କିନ୍ତୁ ତା'ର ଅତି ପ୍ରିୟ ପରିଚିତ ସ୍ୱର ଶୁଣି, ଆନନ୍ଦ ବିସ୍ମୟରେ ତା'ର ରୁଦ୍ଧ କଣ୍ଠ ମୁକ୍ତ ହୋଇଗଲା, ସେ ଅନୁଚ୍ଚସ୍ୱରରେ କାନ୍ଦି ଉଠିଲା ।

ଶୁଭେନ୍ଦ୍ର ତା' ବାହୁକୁ ହଲାଇଦେଇ ସଦମ୍ଭ କଣ୍ଠରେ କହିଲା–

"ମୁଁ ପରା ଅଛି ! ଛି, କାନ୍ଦନା । ଷ୍ଟେସନଟା ।"

ଏହା କହି ସେ ଟାକ୍‌ସିବାଲାକୁ ଟାକ୍‌ସି ଆଣିବାକୁ ଡାକିଲା ।

ଟାକ୍‌ସି ଆସିଲାରୁ ଶୁଭେନ୍ଦ୍ର ପୁଷ୍ପକୁ ଧରି ଭିତରେ ଉଠିବସି ବଡ଼ଦାଣ୍ଡକୁ ଚଳାଇବାକୁ ହୁକୁମ୍ ଦେଲା ।

ଶୁଭେନ୍ଦ୍ର ଦେଖିଲା, ପୁଷ୍ପ ଦାସୀର ଗଦର ଖଣ୍ଡେ ଘୋଡ଼େଇହୋଇଛି । ଭଲ ଲୁଗା ଖଣ୍ଡେ ବି ପିନ୍ଧି ନାହିଁ । ସେ ପୁଷ୍ପ ଦେହରୁ ଗଦରଟି ଟାଣି ପକାଇଦେଇ, ନିଜ ଶାଲ ଖଣ୍ଡକ ତା' ଦେହରେ ଘୋଡ଼ାଇଦେଲାବେଳେ ଦେଖିଲା, ପୁଷ୍ପ ସମ୍ପୂର୍ଣ୍ଣ ନିରଳଙ୍କାରା, କେବଳ ହାତରେ ଦି'ପଟ ସାଦା କାଚ ।

ପୁଷ୍ପର ବାହ୍ୟଜ୍ଞାନ ପ୍ରାୟ ଶୂନ୍ୟ ହୋଇଯାଇଥିଲା । ପ୍ରତି ପଲକରେ ଲଜ୍ଜା ଆଉ ବିସ୍ମୟରେ ତା'ର ଅନ୍ତର ଭିତର ଅନିର୍ବଚନୀୟ ଅନୁତାପର କୋହରେ ବାଷ୍ପାକୁଳିତ ହୋଇଉଠୁଥିଲା । ସେ ଶୁଭେନ୍ଦ୍ରର ମୁହଁକୁ ଚାହିଁପାରିଲା ନାହିଁ । ଆପାଦମସ୍ତକ ଘୋଡ଼ାଇହୋଇ ଜଡ଼ପିଣ୍ଡଟି ପରି ବସିରହିଲା ।

ବଡ଼ଦାଣ୍ଡରେ ଗାଡ଼ି ପହଞ୍ଚିଲାକ୍ଷଣି, ଶୁଭେନ୍ଦ୍ର ପୁଷ୍ପକୁ ହଲାଇ ଦେଇ କହିଲା–

"ପଦାକୁ ଚାହାଁ । ମୁଁ ଏହି ଦୋକାନରୁ ଆସେ ।" ଶୁଭେନ୍ଦ୍ର ଚାଲିଗଲା ।

ପୁଷ୍ପ ପଦାକୁ ଚାହିଁଲା । ଦେଖିଲା, ଆଗରେ ବଡ଼ ଦେଉଳ । ମନେମନେ ଶ୍ରୀଜଗନ୍ନାଥଙ୍କୁ ପ୍ରଣାମ କରି କହିଲା–

"ହେ ଜଗନ୍ନାଥ ! କାହିଁକି ମତେ ଜନ୍ମଦେଇ ଏତେ ହଟହଟା କରୁଛ ? ମତେ ଶୀଘ୍ର ମାରିଦିଅ, ମୁଁ ବଞ୍ଚିଯାଏ ।"

ଶୁଭେନ୍ଦ୍ର ହାତରେ କେତେଗୁଡ଼ିଏ କାଗଜର ପ୍ୟାକେଟ୍ ଧରି ମଟରକୁ ଫେରି ଆସି ଡ୍ରାଇଭରକୁ ପୁଣି ଷ୍ଟେସନକୁ ଫେରାଇବାକୁ କହିଦେଇ, ପୁଷ୍ପର ଚିବୁକକୁ ବୁଲାଇ ଧରି, ତା' ଆଖି ସହିତ ନିଜର ଆଖି ମିଳାଇ ହସିଦେଲା ।

ଷ୍ଟେସନରେ ପହଞ୍ଚି ଟାକ୍‌ସିର ପ୍ରାପ୍ୟ ଛିଡ଼ାଇ ଦେଇ, ପୁଷ୍ପକୁ ଉଏଟିଂ ରୁମ୍‌ରେ ବସାଇ, ନିଜର ଷ୍ଟେସନ ମାଷ୍ଟରଙ୍କୁ ଟେଲିଗ୍ରାଫ୍ କରିଦେଲା ।

କିଛି ସମୟ ପରେ ଉଭୟେ ଗୋଟିଏ ରିଜ୍‌ରଭ୍ ଫାଷ୍ଟ୍‌କ୍ଳାସ୍ ଡବାରେ ଉଠି ବସିଲେ । ଶେଷ ଘଣ୍ଟା ବାଜିଲା, ଗାଡ଼ି ଛାଡ଼ିଲା ।

## ପନ୍ଦର

ଶୁଭେନ୍ଦ୍ର ଆଣିଥିବା ପୁଡ଼ିଆମାନଙ୍କରୁ ଦାନ୍ତଘଷା ବ୍ରସ୍ ଆଉ ଟୁଥ୍‌ପେଷ୍ଟ୍ ବାହାର କରି ପୁଷ୍ପ ହାତକୁ ଦେଇ ଦାନ୍ତ ଘଷିବାକୁ କହିଲା; କିନ୍ତୁ ପୁଷ୍ପ ସେହିପରି ଚୁପ୍ ହୋଇ ବସିରହିଲା ।

ଶୁଭେନ୍ଦ୍ର ପୁଷ୍ପକୁ ଧରି ଜୋର୍‌କରି ବାଥ୍‌ରୁମ୍‌କୁ ନେଇ ତାକୁ ଦାନ୍ତ ଘଷାଇ ଦେଲା ଏବଂ ଫେରିଆସି ଅନ୍ୟ ଗୋଟିଏ ପୁଡ଼ିଆରୁ ଶାଢ଼ି ଖଣ୍ଡିକ ନେଇ ଗଲାବେଳେ ପୁଷ୍ପକୁ ପଛରେ ଦେଖି ଶାଢ଼ି ଖଣ୍ଡିକ ତା' ହାତକୁ ଦେଇ କହିଲା–

"ଯା, ଗାଧୋଇ ଆସ ।"

ପୁଷ୍ପ କିଛି ନ କହି ଛିଡ଼ାହୋଇରହିଲା ।

ଶୁଭେନ୍ଦ୍ର ସ୍ନେହାର୍ଦ୍ର କଣ୍ଠରେ କହିଲା–

"ଚାଲ, ମୁଁ ଆଜି ତୁମକୁ ଗାଧୋଇଦେବି ।"

ପୁଷ୍ପ ନୀରବ ଜିଜ୍ଞାସୁ ନୟନରେ ଶୁଭେନ୍ଦ୍ରର ମୁହଁକୁ ଚାହିଁରହିଲା ।

ଶୁଭେନ୍ଦ୍ର ସ୍ୱରରେ କୃତ୍ରିମ ଗାମ୍ଭୀର୍ଯ୍ୟ ଉପରେ ହାସ୍ୟର ପରଶ ଦେଇ କହିଲା–

"ତମେ ଭାରି ଦୁଷ୍ଟ । ଆଜିଠାରୁ ତୁମକୁ ମୋ' ହୁକୁମ୍ ମାନି ଚଳିବାକୁ ହବ ! ଏତେ ଟିକେ ମାତ୍ର ସ୍ୱାଧୀନତା ତମେ ପାଇବ ନାହିଁ । ଯା, ଗାଧୋଇ ଲୁଗା ବଦଳି ଆସ ।"

ପୁଷ୍ପ ଶୁଭେନ୍ଦ୍ରର ଏ ଢଙ୍ଗ ଦେଖି ବିସ୍ମିତ ହେଲା । କିଛି ଭାବିପାରିଲା ନାହିଁ । କେବଳ ଲକ୍ଷେ ପ୍ରଶ୍ନ ଦୃଷ୍ଟିରେ ଧରି ବିହ୍ୱଳ ଭାବରେ ତାକୁ ଋହିଁରହିଲା ।

ଶୁଭେନ୍ଦ୍ର ଖୁବ୍ ଗମ୍ଭୀର ହୋଇ କହିଲା–

"କ'ଣ ମୋ' କଥା ମାନିବ, ନା ମୁଁ ଏହି ଚଳନ୍ତା ରେଳ ଉପରୁ ଏହିକ୍ଷଣି ନଈକୁ ଡେଇଁପଡ଼ିବି ?"

କହି ଡବାର ଝରକା ଆଡ଼କୁ ଅଗ୍ରସର ହେବା ଦେଖି ପୁଷ୍ପ ତତ୍‌କ୍ଷଣାତ୍ ଚିତ୍‌କାର କରିଉଠି ତା' ହାତକୁ ଧରି ଟାଣିଆଣିଲା ।

ଶୁଭେନ୍ଦ୍ର ଈଷତ୍ ପଛକୁ ଘୁଞ୍ଚିଆସି ସେହିପରି କୃତ୍ରିମ ଗାମ୍ଭୀର୍ଯ୍ୟ ରଖି ପୁଷ୍ପ ମୁହଁକୁ ଋହିଁ କହିଲା–

"ମତେ ତମେ ବଞ୍ଚେଇ ରଖିପାରିବ ? ଛାଡ଼ିଦିଅ, ମୁଁ ଯାଏ ।"

ଶୁଭେନ୍ଦ୍ରର ଏହି କଥାରେ ହଠାତ୍ ବାଦଲ ଫାଟିଯାଇ, ପାଣି ଓଜାଡ଼ିହୋଇ ପଡ଼ିଲା ପରି, ପୁଷ୍ପ ଆଖିରୁ ଲୁହର ବନ୍ୟା ମାଡ଼ିଆସି ତା'ର ଗଣ୍ଡସ୍ଥଳରେ ପ୍ଳାବିତ କରି, ବକ୍ଷର ବସନକୁ ତିନ୍ତାଇଦେଲା । ସେ ଆତ୍ମବିସ୍ମୃତ ହୋଇ କାନ୍ଦୁକାନ୍ଦୁ କହିଲା–

"ତମେ କୁଆଡ଼େ ଯିବ ?"

ଶୁଭେନ୍ଦ୍ର ପୁଷ୍ପ ମନର ଅବସ୍ଥା ଅନୁଭବ କରି ହସିହସି ତା'ର ଦୁଇ ବାହୁକୁ ଧରି ହଲାଇଦେଇ କହିଲା–

"ତମେ କୁଆଡ଼େ ଯାଇଥିଲ ? ମୁଁ ସେହିଆଡ଼େ ଯିବି । ଛି କାନ୍ଦନା । ତମ କାନ୍ଦ ମୁଁ କେବେହେଁ ସହିପାରିବି ନାହିଁ । ତମେ ଜାଣନା, ତମେ ମୋର କ'ଣ ? ତମେ ମୋତେ ଛାଡ଼ି ଯାଉଥିଲ, ଭାବିଥିଲ ଟିକେ ତମେ ମୋତେ ଛାଡ଼ିଗଲେ ମୋ' ଅବସ୍ଥା କ'ଣ ହେବ ବୋଲି ? କେବଳ ନିଜ କଥାଟି ମାତ୍ର ଭାବିନେଲ ! ଏଡ଼େ ସ୍ୱାର୍ଥପର ତମେ ! ମୁଁ ଭାବିଥିଲି, ନାରୀଜାତି ମନୁଷ୍ୟ ମନର ଭାବ ବେଶି ଜାଣିପାରେ ବୋଲି । ଆଉ ସେ ନିଜ କଥା ଅପେକ୍ଷା ପର କଥା ବେଶି ଭାବେ ବୋଲି ! ମୁଁ ଜାଣିଥିଲି ନାରୀଜାତିର ହୃଦୟ କେବଳ ଦୟା, ପ୍ରୀତି, କୋମଳତାରେ ଗଢ଼ା ବୋଲି ! କିନ୍ତୁ ତମେ ଏଡ଼େ ନିର୍ମ୍ମମ, ଏଡ଼େ କଠୋର !

କହୁକହୁ ଶୁଭେନ୍ଦ୍ରର କଣ୍ଠ ବାଷ୍ପରୁଦ୍ଧ ହୋଇ ଆସିଲା, ଆଖି ତା'ର ଅଶ୍ରୁସଜଳ ହୋଇଆସିଲା ।

ସେ ଆଉ କଥା କହିପାରିଲା ନାହିଁ । କେବଳ ରୁଦ୍ଧ ଆବେଗରେ ପୁଷ୍ପ ମୁହଁକୁ ଚାହିଁରହିଲା ।

ପୁଷ୍ପ ଶୁଭେନ୍ଦ୍ରର ଏପରି ଭାବ କେବେହେଲେ ଦେଖିନଥିଲା । ସେ କେବଳ ବିହ୍ୱଳ ବିସ୍ଫାରିତ ଲୋଚନରେ ତାହାଙ୍କୁ ଚାହିଁରହିଲା ।

ଉଭୟେ କିଛିକ୍ଷଣ ଉଭୟଙ୍କୁ ଏକଭାବରେ ଚାହିଁଲା ପରେ ଶୁଭେନ୍ଦୁ କହିଲା–

"ମୋ' ହୁକୁମ୍ ମାନିବାକୁ ହେବ ।"

ସେହିପରି ପୁଷ୍ପ କେବଳ ଚାହିଁରହିଲା । ତା' ଚାହାଣିରେ ଯେପରି ଶତ ପ୍ରଶ୍ନ ଫୁଟିଉଠିଲା ।

ଶୁଭେନ୍ଦ୍ର ସ୍ଥିର ଭାବ୍‌ରେ କହିଲା–

"ହଁ, ମୋ' ହୁକୁମ ମୋ' ଆଦେଶ । ଅନ୍ତତଃ ଯେତେଦିନ ପର୍ଯ୍ୟନ୍ତ ତମେ ମୋ'ର ପତ୍ନୀ କିମ୍ବା ବନ୍ଧୁ ନ ହୋଇପାରିଛ, ସେତେଦିନଯାଏ ମୋ'ର ସ୍ତ୍ରୀ ହୋଇ ରୁହ । ସ୍ୱାମୀର ଆଦେଶ ମାନି ଚଳ । ଯା ଗାଧୋଇ ଲୁଗା ପାଲଟିଆସ ।"

ଶୁଭେନ୍ଦ୍ରର କଥାରେ ପୁଷ୍ପର ଅନ୍ତର ଭିତରେ ଗୋଟାଏ ଅଭାବନୀୟ ଆନନ୍ଦର ଉଚ୍ଛ୍ୱାସ ଘୂର୍ଣ୍ଣିବାୟୁ ପରି ତା'ର ସାରା ଦେହକୁ ପ୍ରକମ୍ପିତ କରିଦେଲା । ସେ ଶୁଭେନ୍ଦ୍ରର ହାତ ଛାଡ଼ିଦେଇ ସିଟ୍ ଉପରେ ବସିପଡ଼ିଲା । (ତାକୁ ଜଣାଗଲା, କଥାରେ ଯେଉଁ ଆକାଶକୁସୁମ କଥା କହନ୍ତି, ସତେ ଯେପରି ସେହି ଆକାଶକୁସୁମ ତା' ଉପରେ ଅଜାଡ଼ି ହୋଇପଡୁଛି । ତା'ର ସୌରଭରେ ଜଗତଟା ପରିପୂର୍ଣ୍ଣ ହୋଇଉଠୁ । ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ ପଶୁପକ୍ଷୀ, ବୃକ୍ଷଲତା, ଗିରିବନ, ନଦନଦୀ ଆନନ୍ଦରେ ବିଭୋର ହୋଇ ନାଚିଉଠିଛନ୍ତି। ତା' ଦେହରେ କିଏ ଆଗରୁ ଚନ୍ଦନ ବୋଳିଦେଇଛି । ଆଉ ବସନ୍ତର ସୁଗନ୍ଧ ମଧୁର ଶୀତଳ ପବନ ତା' ଦେହରେ ପାଗଳପରି ବାଡ଼େଇହୋଇ ଯାଇଛି ।)

ସେ ନିଶ୍ଚିତ ନିର୍ଭର ଚାହାଣିରେ କିଛି ସମୟ ଶୁଭେନ୍ଦ୍ରକୁ ଚାହିଁଲା । ଧୀରେ ଧୀରେ ତାର ଆଖି ବୁଜିହୋଇଆସିଲା । ସେ ଗଦି ଉପରକୁ ଆଉଜିପଡ଼ିଲା ।

ଶୁଭେନ୍ଦ୍ର ତା ପାଖରେ ବସିପଡ଼ି ଧୀରେ ଧୀରେ ତା' ମୁଣ୍ଡରେ ହାତ ବୁଲାଇ ଦେଇ, ସ୍ନେହଜର୍ଜରିତ କଣ୍ଠରେ ପଚାରିଲା–

"ଶୋଇବ, ନିଦ ଲାଗୁଛି ? କାଲି ରାତି ଅନିଦ୍ରା—ଆଚ୍ଛା, ଟିକିଏ ଶୋଇପଡ଼ ।"

ଶୁଭେନ୍ଦ୍ର ଶାଲ୍‌ଟିକୁ ଭଲ ଭାବରେ ତା' ଦେହରେ ସଜାଡ଼ିଦେଲା ।

କିଛି ସମୟ ପରେ ପୁଷ୍ପ ଆଖିଖୋଲି ଦେଖିଲା, ଶୁଭେନ୍ଦୁ ତା' ପାଖରେ ଛିଡ଼ାହୋଇ, ତା' ଆଡ଼କୁ ବିହ୍ୱଳ ଆଖିରେ ଚାହିଁରହିଛି । ତାକୁ ଭାରି ଲଜ୍ଜାବୋଧ ହେଲା, ସେ ମୁଣ୍ଡର ଲୁଗା ଟିକେ ତଳକୁ ଟାଣିଦେଲା ।

ଶୁଭେନ୍ଦୁ କ'ଣ ଭାବି ଆଣିଥିବା ଖାଦ୍ୟଟିଣଗୁଡ଼ିକ ଖୋଲିବାକୁ ଚେଷ୍ଟା କରୁକରୁ ପୁଷ୍ପକୁ ଚାହିଁ କହିଲା–

"ମୁଁ ଜାଣିପାରୁନଥିଲି, ତମେ କେତେଦିନ ହେଲା ନଖାଇ ନପିଇ ନିଜ ଉପରେ ଅତ୍ୟାଚାର କରିଆସୁଛ ! ମୁଁ ନିଜର ଦେହ, ପ୍ରାଣ ବିନିମୟରେ ଯେଉଁ ଅମୂଲ୍ୟ ପଦାର୍ଥ ଲାଭ କରିଛି, ତମେ କାହିଁକି ତାକୁ ନଷ୍ଟ କରିବାକୁ ଯାଉଛ ?"

ପୁଷ୍ପ କେବଳ ଆବେଗମୟ ଦୃଷ୍ଟିରେ ଶୁଭେନ୍ଦୁକୁ ଚାହିଁଲା ।

ଶୁଭେନ୍ଦୁ ସହଜ ଭାବରେ କହିଲା–

"ବୁଝିପାରୁନା ? ମତେ ଦେବତା ବୋଲି ମୋଟେ ଭାବନା । ମୁଁ ଏହି ସାଧାରଣ ମନୁଷ୍ୟ । ମନୁଷ୍ୟର ପୂର୍ଣ୍ଣ ବିକାଶ ଦେବତା ହେଲେହେଁ, ଏହି ରକ୍ତ ମାଂସ ଶରୀର ଧରି କେହି ଦେବତା ହୋଇ ପାରିବେନାହିଁ ! ମୁଁ ବି ନୁହେଁ । ଆମ ଦେଶର ଶିକ୍ଷା, ସଭ୍ୟତା, ଧର୍ମ, ସଂସ୍କୃତି ସମସ୍ତ ହିଁ ମନୁଷ୍ୟକୁ ଦେବତା କରିବା ପ୍ରଚେଷ୍ଟାରେ ପ୍ରତିଷ୍ଠିତ ପ୍ରକୃତ ମନୁଷ୍ୟଟିକୁ ତାର ନ୍ୟାଯ୍ୟ ଦାବି ଦେବାରେ ବରାବର କୁଣ୍ଠିତ । ମୁଁ ଏହି ଦେବତ୍ୱ ଭିତରେ ଗଲା ଛ'ମାସ ବରାବର ଘାଣ୍ଟି ହୋଇ ମରିଛି, ମୋର ପ୍ରକୃତ ହୃଦୟ ଆଉ ପ୍ରକୃତ ମାନବିକତାକୁ ଉପେକ୍ଷା କରି । ଆଉ ଏଣିକି ତାକୁ ମୁଁ ଅବହେଳା କରିପାରିଲି ନାହିଁ । ଭାବିଲି, ସେ ଦେହ, ସେ ପ୍ରାଣ ମୋର। ପୁଷ୍ପର ତହିଁରେ କିଛି ଦାବି ନାହିଁ । ମୁଁ ତାକୁ ମୋର ସର୍ବସ୍ୱ ଦେଇ ଲାଭକରିଛି । ଶବି ପରି ଦେହର ମାଂସ କାଟି ଆଉ ଛଞ୍ଚାଣକୁ ଦେଇପାରିବି ନାହିଁ । ସେ ତ୍ୟାଗ ଯେ କରୁଛି କରୁ, ସେ ପଛେ ଦେବତା ହେଉ–ମୁଁ ପାରିବି ନାହିଁ ! ମାଣିକ୍ୟ ପାଇଁ ତାକୁ ଅବହେଳା କରି ହରାଇବା ଭଳି ମୂର୍ଖ ମୁଁ ନୁହେଁ ।"

ପୁଷ୍ପ ଏକାଗ୍ରଚିତ୍ତରେ ଶୁଭେନ୍ଦୁର କଥା ଶୁଣୁଥିଲା, ହଠାତ୍ ଉଠିପଡ଼ି ଲୁଗା ପୁଡ଼ିଆଟିକୁ ଧରି ବାଥ୍‌ରୁମ୍‌କୁ ଚାଲିଗଲା । ମାଘମାସର କନକନିଆ ଶୀତରେ ଦେହ ଥରିଉଠୁଥାଏ, ତଥାପି ପୁଷ୍ପ ଦେହରେ ସାବୁନ ଲଗାଇବ ।

ମନର ଚଞ୍ଚଳତା ଭିତରେ ଶୁଭେନ୍ଦୁ ପୁଷ୍ପର ପତ୍ର ଖଣ୍ଡିକ ପଢ଼ିବାକୁ ଅବସର ପାଇନଥିଲା । ଯେତେବେଳେ ପୁଷ୍ପ ବିଦାୟ ଘେନି ଶୁଭେନ୍ଦୁଠାରୁ ଆସିଲା,

ସେତେବେଳେ ଶୁଭେନ୍ଦ୍ର ତା' ନିଜର ବିଛଣାରେ ନଥିଲା । କେବଳ ତା'ର ଘୋଡ଼ାଇ ହେବା କମ୍ବଳ ଖଣ୍ଡିକ ମନୁଷ୍ୟ ଆକାରରେ ଖଟ ଉପରେ ପଡ଼ିଥିଲା ମାତ୍ର । ସେ କିଛି ସମୟ ଆଗରୁ ତା'ର ହୋମିଓପାଥିକ୍ ବାକ୍ସ ଖଣ୍ଡକ ଧରି, ଜଣେ ଗ୍ରାମବାସୀର ଆହ୍ୱାନରେ ତା' ଘରକୁ ଯାଇଥିଲା । ପୁଷ୍ପ ଏତେ ନିବିଷ୍ଟ ମନରେ ବସି ଚିଠି ଲେଖୁଥିଲା ଯେ ଏ କଥା ଆଦୌ ସେ ଜାଣିପାରିଲା ନାହିଁ । ପୁଷ୍ପ ଯିବାର ପ୍ରାୟ ଅଧଘଣ୍ଟା ପରେ ସେ ଘରେ ପ୍ରବେଶ କରି ଦେଖିଲା, ତା' ପାଦ ପାଖରେ କ'ଣ ଖଣ୍ଡେ ଲଫାପା ପଡ଼ିଛି । ସେ କୌତୂହଳୀ ହୋଇ ହଠାତ୍ ଲଫାପାଟି ଫିଟାଇ ଦେଖିଲା, ଏକ ଦୀର୍ଘ ପତ୍ର । ଶିରୋନାମା ପଢ଼ିବା ପାଖରୁ କିଏ ଲେଖିଛି, କିଛି ବୁଝିପାରିଲା ନାହିଁ । ଚିଠିଟି ଓଲଟାଇ ଦେଖିଲା, ଲେଖାଅଛି ଶେଷରେ–ତମର ଚରଣପ୍ରାନ୍ତର ଦଳିତ କୁସୁମ– 'ପୁଷ୍ପ' । ହଠାତ୍ ସେ କିଛି ବୁଝିପାରିଲା ନାହିଁ । ଚିଠିଟିକୁ ପଢ଼ିବାକୁ ତା'ର ପ୍ରବଳ ଇଚ୍ଛା ହେଲା । ଅସ୍ଥିର ମନରେ ସେ ପଢ଼ିଲା ।

ଚିଠିର କେତେକ ଅଂଶ ପଢ଼ିସାରିଲା ପରେ ସେ ବୁଝିପାରିଲା ଯେ ପୁଷ୍ପ ତାକୁ ଛାଡ଼ି ଚାଲିଯାଇଛି । ତା' ମୁଣ୍ଡ ଘୂରିଗଲା; କିନ୍ତୁ ମୁହୂର୍ତ୍ତକରେ ସେ କର୍ତ୍ତବ୍ୟ ଠିକ୍ କରିନେଲା । ପୁଷ୍ପ ଘରକୁ ଯାଇ ଦେଖିଲା, ମିନି ଏକାକୀ ଶୋଇଛି । ସେ କିଛି ନ ଭାବି ଚାବିଟା ଖୋଜିଲା । ନିଜ ବିଛଣା ଉପରୁ ଚାବିଟା ପାଇ ଆଲମାରି ଖୋଲି, କେତେଖଣ୍ଡ ନୋଟ୍ ପକେଟରେ ପୂରାଇ ଯେଉଁ ବେଶରେ ଥିଲା, ଠିକ୍ ସେହି ବେଶରେ ବାହାରିପଡ଼ିଲା । ବାରନ୍ଦାକୁ ଆସି ମିନି କଥା ତା'ର ମନେପଡ଼ିଲା, ମିନି ଏକାକୀ ଶୋଇଛି । ବାଈଆକୁ ଉଠାଇ ମିନିକୁ ଜଗି ଶୋଇବାକୁ ଏବଂ ନ ଫେରିବାଯାଏ ତା'ର ହେପାଜତ ନେବାକୁ କହି ଚଞ୍ଚଳ ପାଦରେ ଘରୁ ବାହାରିଆସି ଭାବିଲା, ମଟରରେ ଯିବ ବୋଲି; କିନ୍ତୁ କାଳେ ବାଟରେ ସେ ପୁଷ୍ପକୁ ହରାଇବ, ଏହି ଭୟରେ ଚଞ୍ଚଳ ପଦରେ ଷ୍ଟେସନ ଅଭିମୁଖେ ଚାଲିଲା ।

ଷ୍ଟେସନରେ ପହଞ୍ଚି ବୁଝିଲା ଯେ ପାସେଞ୍ଜର ଚାଲିଯାଇଛି । ଆଉ ଦଶମିନିଟ୍ ପରେ ଏକ୍ସପ୍ରେସ୍ ।

ବୁକିଂ କ୍ଲର୍କ ଆସି ଆଶ୍ଚର୍ଯ୍ୟ ହେଲାପରି ପଚାରିଲା–ହାଲୋ ପ୍ରିନ୍ସ ! ପ୍ରିନ୍ସ ସେ ତ ଆଗରୁ...

ଶୁଭେନ୍ଦ୍ର ବିଚଳିତ ହୋଇଉଠିଲା ଏବଂ ଅସ୍ଥିର ଆବେଗର ସହିତ ପଚାରିଲା–

"ତା' ହେଲେ ଆପଣ ଟିକେଟ ଦେଇଛନ୍ତି କେଉଁଠିକି ?"

ଶୁଭେନ୍ଦ୍ରର ଭାବ ଦେଖି କ୍ଲର୍କ ଟିକେ ଥତମତ ହୋଇ କହିଲା—ହଁ ଆଜ୍ଞା, ପୁରୀ, ପ୍ରଥମତଃ ମୋ'ର ଚିହ୍ନିବାର ଉପାୟ ନଥିଲା । ସେ ଯେତେବେଳେ ଗାଡ଼ିରେ ଯାଇ ବସିଲେ...

କଥା ନସରୁଣୁ ଗାଡ଼ି ଆସି ପ୍ଲାଟ୍‌ଫର୍ମରେ ପହଞ୍ଚିଗଲା ।

ଶୁଭେନ୍ଦ୍ର ଗାଡ଼ିରେ ଉଠିପଡ଼ି ଏବଂ ଦୁଶ୍ଚିନ୍ତାରେ ବସି ଭାବିବାକୁ ଲାଗିଲା—

ପୁଷ୍ପ ତାର ମନ ଭିତରେ ଲାଗିଥିବା ଦ୍ୱନ୍ଦ୍ୱର ସମାଧାନ କରିଦେଇଯାଇଛି । ଯଦି ଗତ ରାତ୍ରିରେ ତା'ର କିଞ୍ଚିତ ଆଭାସମାତ୍ର ସେ ପାଇଥାନ୍ତା, ତା'ହେଲେ ଘଟଣାଟି ଏତେଦୂର ଅଗ୍ରସର ହୋଇପାରିନଥାନ୍ତା । ପୁଷ୍ପର ମନ ଜାଣିବା ପାଇଁ ତାକୁ ଅନ୍ୟ ପାତ୍ରରେ ବିବାହ ଦେବା କଥା ଉଠାଇବା ଦ୍ୱାରା ଦୁଃଖରେ ପୁଷ୍ପର ଯେଉଁ ଅଶ୍ରୁ ବିନ୍ଦୁଟି ଶୁଭେନ୍ଦ୍ରର କପାଳ ଉପରେ ପଡ଼ିଥିଲା, ଶୁଭେନ୍ଦ୍ର ତାହାର ଅର୍ଥ ବୁଝିପାରିନଥିଲା ଏବଂ ଜାଣିନଥିଲା ଯେ (ବୃଶ୍ଚିକ ଦଂଶନରେ ମନ୍ତ୍ର ନଜାଣି ସର୍ପବିଳରେ ହସ୍ତ ଚାଳନା କରିବା ଭଳି ନାରୀର ଚିତ୍ତବୃତ୍ତି ଉପରେ ଲକ୍ଷ୍ୟ ନ ରଖି ତା' ଉପରେ ହସ୍ତକ୍ଷେପ କରିବା କେବଳ ତାକୁ ହରାଇବା ବ୍ୟତୀତ ଆଉ କିଛି ଫଳ ହୁଏ ନାହିଁ) ଜାଣିଥିଲେ ସେ କେବେହେଁ ତାର ସେହି ପ୍ରିୟତମା ପୁଷ୍ପ ମନରେ ଏତେବଡ଼ ଆଘାତ ଦେଇନଥାନ୍ତା ।

ସେଥିପାଇଁ ଶୁଭେନ୍ଦ୍ର ବଡ଼ ଅନୁତପ୍ତ, ବ୍ୟଥିତ ହେବାକୁ ଲାଗିଲା ଏବଂ କାଳେ କେଉଁ ଷ୍ଟେସନରେ ଓହ୍ଲାଇଥିବ ଭାବି ସତର୍କ ଭାବରେ ଯେତେକ ଷ୍ଟେସନରେ ଓହ୍ଲାଇ ଯଥାସାଧ୍ୟ ଅନୁସନ୍ଧାନ କରିବାକୁ ତ୍ରୁଟି କଲାନାହିଁ ।

ଖୁବ୍ ଭୋର୍‌ରୁ ଗାଡ଼ି ପୁରୀ ଷ୍ଟେସନରେ ପହଞ୍ଚିଗଲା । ଗାଡ଼ିରୁ ଓହ୍ଲାଇ ପ୍ଲାଟଫର୍ମ ସେପାଖରେ ଦେଖିଲା, କେତେଗୁଡ଼ିଏ ଲୋକ ଶାଗୁଣା ପରି ଜଣକୁ ଘେରିଛନ୍ତି । ପୁଷ୍ପ ଯଦିଓ ଆପାଦମସ୍ତକ ଆବୃତ ଥିଲା, ଶୁଭେନ୍ଦ୍ର ତା' ଛିଡ଼ାହେବା ଠାଣିରୁ ଚିହ୍ନିପାରି ଜନତା ଭିତରେ ପଶି 'ହଠ୍‌ଯାଓ ହଠ୍‌ଯାଓ' ବୋଲି ଚିତ୍କାର କରିଉଠିଲା । ତା' ପରେ ରେଳରେ ପୁଣି ବସିବାଯାଏ ଚିଠିଟି ପଢ଼ିବାକୁ ସେ ସୁବିଧା ପାଇ ନଥିଲା । ପୁଷ୍ପ ଗାଧୋଇବାକୁ ଯିବାରୁ ପକେଟ୍‌ରୁ ଚିଠି ଖଣ୍ଡିକ ବାହାର କରି ସ୍ଥିର ମନରେ ପଢ଼ିବାକୁ ଲାଗିଲା—

"କ'ଣ ବୋଲି ମୁଁ ତୁମକୁ ସମ୍ବୋଧନ କରିବି କିଛି ଭାବିପାରୁନାହିଁ । କେବଳ ମୋର ଅନ୍ତର ଭିତରେ ମୁଁ ତମକୁ ଯାହା ସବୁବେଳେ ଡାକେ, ସେହି ସମ୍ବୋଧନ କରୁଛି । ତାହା ଉଚିତ କି ଅନୁଚିତ, ମୁଁ ବିଚାର କରିନାହିଁ ।

ହେ ସୁନ୍ଦର !

ବିଧାତା ମୋର ଆଶା-ବୃକ୍ଷରେ କୁଠାରଘାତ କରିଛି । ମୋ'ଠାରୁ ତମେ ଯେତେବେଳେ ଦୂରକୁ ଘୁଞ୍ଚିଯାଉଛ, ଆଉ ଏହା ମଧ୍ୟ ସତ୍ୟ ମୁଁ ବା ତମର ଗଳଗ୍ରହ ହୋଇ ରହିବି କାହିଁକି ? ତମକୁ ଦେଖି ଭାବିଥିଲି, ମୋର ବିଷ ଖାଇବା ଭ୍ରମ ହୋଇଥିଲା; କିନ୍ତୁ ତମେ ଯେଉଁଦିନ ପ୍ରକୃତ କଥା ଉଦ୍‌ଘାଟନ କଲ, ସେହିଦିନୁ ମୁଁ ଗୋଟିଏ ବୃନ୍ତହୀନ କୁସୁମ ପରି ବାତ୍ୟା ମଧ୍ୟରେ ଉଡ଼ିବୁଲୁଛି । ପ୍ରତି ମୁହୂର୍ତ୍ତରେ ବିଷ ପିଇ ଆଉ ଜୀବିତ ରହିବା ବଡ଼ ଦୁର୍ବିସହ । ଯେତେବେଳେ ମୁଁ ନବ ଜୀବନ ଲାଭକରି ଦେଖିଲି, ମୋ' ସ୍ୱାମୀ ବୃଦ୍ଧ ଆଉ କଦାକାର ନୁହେଁ, ମୁଁ ନିଜକୁ ଶତଧିକ୍କାର କରିଥିଲି; କିନ୍ତୁ ତମରି ଦାନ ମୋର ଏ ଜୀବନକୁ ଆଉ ନଷ୍ଟ କରିପାରିବ ନାହିଁ । କେଜାଣି କାହିଁକି ତମକୁ ଦେଖି ଜୀବନ ପ୍ରତି କିପରି ମାୟାଜାତ ହୋଇଯାଇଛି । ମାତ୍ର ତମକୁ ମୁଁ ଆଉ ତ ଦୁଃଖ ଦେଇପାରିବି ନାହିଁ! ମଝିରେ ବିଚ୍ଛେଦର ନଦୀ ପ୍ରବାହିତ କରି ଚକ୍ରବାକ ଦମ୍ପତି ଭଳି ବଞ୍ଚିବାରେ କି ଲାଭ ?

ହୁଏତ ତମକୁ ଚାହିଁ ଚାହିଁ ଚିର ଜୀବନ କାଟିଦେଇପାରିଥାନ୍ତି । ସେଥିପାଇଁ କରଜ ନେଇ ଋଣଭାର କମାଇଦେବା କଥା ଉଠାଇଥିଲି; କିନ୍ତୁ ତମେ ବା କାହିଁକି ଏ ଅଭାଗିନୀ ସକାଶେ ଏପରି ଦୁର୍ବିସହ ଦୁଃଖଯନ୍ତ୍ରଣାରେ ବୁଡ଼ିରହିବ ? ତମେ ଧନୀ, ତମେ ସୁନ୍ଦର । ଜଗତର ଶ୍ରେଷ୍ଠ ସୁନ୍ଦରୀ ତମର ଚରଣସେବା କରି, ହୁଏତ ନିଜକୁ ସାର୍ଥକ କରିପାରିବ । ମୁଁ ତମର ସେହି ସୌଭାଗ୍ୟର ପ୍ରତିବନ୍ଧକ ହୋଇ, ଗୋଟିଏ ଅଭିଶାପ ପରି ରହିବି ଆଉ କାହିଁକି ? ମୁଁ ଅତି ନିସ୍ୱ, ଗୋଟିଏ ଅତି ଦରିଦ୍ରର କନ୍ୟା । ତମକୁ ମୁଁ କଦାପି ପାଇପାରିବି ନାହିଁ । ତମେ ବି ମୋତେ କଦାପି ଗ୍ରହଣ କରିପାରିବ ନାହିଁ । କେବଳ ଦେବତାର ମଙ୍ଗଳମୟ ଘଟଣାଚକ୍ରରେ ତମର ସୁନ୍ଦର କରପରଶରେ ନିଜକୁ ନବଜୀବନ ଲାଭରେ ଧନ୍ୟ କରିଥିଲି । ତାହାହିଁ ମୋର ଯଥେଷ୍ଟ ହୋଇଛି । ଭାବିଥିଲି, ମୋ' ଜୀବନର ଦୁଃଖମୟ କାହାଣୀ ତମକୁ ଜଣାଇଯିବି ବୋଲି; କିନ୍ତୁ ଜଣାଇ କାହିଁକି ତମକୁ ଦୁଃଖ ଦେବି ? ତମର ଋଣ ମୁଁ କିପରି ବା ଶୁଝିପାରିବି ? କେବଳ ତମେ ନଜାଣି ଉଦାର ଭାବରେ ମୋ ପାଖରୁ ଯାହା ଗ୍ରହଣ କରିବାକୁ କହିଥିଲ, ସେହି ମୋର ସମସ୍ତ ମନ, ପ୍ରାଣ ଶ୍ରୀଚରଣରେ ଅର୍ପଣ କରି, ହେ ସୁନ୍ଦର, ଚିରଦିନ ପାଇଁ ମୁଁ ତୁମକୁ ଜଞ୍ଜାଳମୁକ୍ତ କରି ଆଜି ଅନ୍ତର ହୋଇଯାଉଛି । ଏପରି ଗୋଟିଏ ସାମାନ୍ୟ ବାଳିକାର ଅନୁସନ୍ଧାନ କରି ଆଉ ନିଜର ସୁନ୍ଦର ତନୁକୁ ପୀଡ଼ା ଦେବନାହିଁ ।"

ଶୁଭେନ୍ଦ୍ର ଚିଠିଖଣ୍ଡିକ ପଢ଼ିସାରି ପକେଟରେ ରଖି, କ'ଣ ଭାବି ହଠାତ୍ ଉଠିପଡ଼ି ଉତ୍ତେଜିତ ହେଲାପରି ଦୁଇ ହାତ କାଖରେ ଜାକି, ଡବାର ଏପାଖସେପାଖ ଦମ୍ଭର ସହିତ ପଦସଂଚାଳନ କରିବାକୁ ଲାଗିଲା । ଯେପରି ସେ ବହୁଦିନ ହେଲା କାହା

ସହିତ ଯୁଦ୍ଧ କରି ବର୍ତ୍ତମାନ ବିଜୟ ଟିକା ମୁଣ୍ଡରେ ଧରି ଫେରିଛି । ଏ ଶୀତରେ ମଧ୍ୟ ତା' କପାଳରୁ ମୁକ୍ତା ବିନ୍ଦୁପରି ଘର୍ମବିନ୍ଦୁମାନ ଝରିପଡ଼ିଲା ।

ପୁଷ୍ପ ଶୁଭେନ୍ଦ୍ରର ଏପରି ପରିବର୍ତ୍ତନ ସପକ୍ଷ ବିପକ୍ଷରେ କେତେ କଥା ଭାବୁ ଭାବୁ ତା'ର ପିଲାଦିନଠାରୁ ଆଜି ପର୍ଯ୍ୟନ୍ତ ଯାହାଯାହା ଘଟିଥିଲା, ସବୁକଥା ମନେପଡ଼ି ତା'ର ଅନ୍ତର ଭିତରେ ନିରାଶାର କୋହ ଉଚ୍ଛୁଳିଉଠିଲା । ସ୍ନାନ କରୁକରୁ କ୍ଷୀଣସ୍ୱରରେ କାନ୍ଦିପକାଇଲା ।

ଶୁଭେନ୍ଦ୍ର ପଦଚାରଣ କରୁକରୁ ଶୁଣିପାରି କହିଲା–

"ଏ ଶୀତରେ ଏତେ ସମୟ ଗାଧୁଅ ନାହିଁ । ଶୀଘ୍ର ଆସ ।"

କିଛିକ୍ଷଣ ପରେ ପୁଷ୍ପ ଦ୍ୱାର ଖୋଲି ଶୁଭେନ୍ଦ୍ରକୁ ଚାହିଁ ଯାହା ଦେଖିଲା, ସେଥିରେ ସେ ବିସ୍ମୟରେ ସ୍ତମ୍ଭୀଭୂତ ହୋଇଗଲା । ଆଉ ସେ ଅଗ୍ରସର ହୋଇପାରିଲା ନାହିଁ । ଶୁଭେନ୍ଦ୍ରର ଚିରପ୍ରଫୁଲ୍ଲ ମୁଖମଣ୍ଡଳରେ ସେ କେବେ ଏତେ କାଠିନ୍ୟ, ଏତେ ଦୃଢ଼ ଭାବ ଦେଖି ନଥିଲା । ତା'ର ହୃଦୟ ଆଶଙ୍କାରେ ଥରିଉଠିଲା ଏବଂ ଦୃଷ୍ଟି ତା'ର ତଳକୁ ହୋଇଗଲା ।

ଶୁଭେନ୍ଦ୍ର ତଳକୁ ଚାହିଁଚାହିଁ ପଦଚାରଣ କରୁଥିଲା । ଖଟ୍‌ଖଟ୍ ଶବ୍ଦ ଶୁଣି ମୁହଁ ଉଠାଇ ଦେଖିଲା, ହଠାତ୍ ଯେପରି ତା' ଆଗରେ ସୁଗନ୍ଧରେ ବାୟୁମଣ୍ଡଳକୁ ମୁଗ୍ଧ କରି ଗୋଟିଏ ପଦ୍ମଫୁଲ ଫୁଟିଉଠିଛି । ପଲକ ଭିତରେ ଶୁଭେନ୍ଦ୍ରର ମୁଖର ଭାବ ବଦଳିଯାଇ ତା'ର କମନୀୟ ମୁଖଶ୍ରୀ ଉପରେ ପ୍ରେମର ଜଗତ୍‌ମୟୀ ମାଧୁର୍ଯ୍ୟ ଫୁଟି ଉଠିଲା । ସେ ମୁହୂର୍ତ୍ତେ ମାତ୍ର ପୁଷ୍ପକୁ ଅନିମେଷ ଲୋଚନରେ ଚାହିଁ ଉଚ୍ଛ୍ୱସିତ ପ୍ରେମାବେଗରେ ଡାକିଲା–

"ଆସ ।"

ପୁଷ୍ପ ଈଷତ୍ ଦୃଷ୍ଟି ଉନ୍ନତ କରି ଶୁଭେନ୍ଦ୍ରକୁ ଚାହିଁଲା । ଦେଖିଲା, ସେହି ଚିର ପ୍ରଫୁଲ୍ଲ ମୁଖମଣ୍ଡଳ । ଆଶଙ୍କାର ଲେଶମାତ୍ର ଚିହ୍ନ ତା' ଦେହରେ ନାହିଁ । ସେ ପୁଣି ଦୃଷ୍ଟି ତଳକୁ କଲା ।

ଶୁଭେନ୍ଦ୍ର ପୁଷ୍ପର ଆହୁରି ନିକଟକୁ ଆସି ପୂର୍ଣ୍ଣ ମମତାଜଡ଼ିତ କଣ୍ଠରେ ଡାକିଲା–

"ରାଣୀ ! ପୁଷ୍ପରାଣୀ ! ଆସ, କତିକି ଆସ ।"

ଏ 'ରାଣୀ' ଡାକରେ ପୁଷ୍ପର ସମସ୍ତ ଦେହ ଯେପରି ତରଳିଗଲା । ସେ ଅନୁଭବ କଲା, ତା'ର ପାଦ ତରଳିଯାଇ ସତେକି ଟ୍ରେନ୍‌ର ପଟାଫ୍ଲୋର୍ ଉପରେ ଲାଗିଯାଇଛି । ସେ ନିଜକୁ ନିଜେ ହଲାଇ ବି ପାରିଲା ନାହିଁ ।

ଶୁଭେନ୍ଦୁ ଦେଖିଲା, ପୁଷ୍ପର ଗଣ୍ଡରେ ଲୁହ ଝରଝର ହୋଇ ବହିଯାଉଛି । ସେ ଆଉ ସମ୍ଭାଳି ନ ପାରି ତତ୍‌କ୍ଷଣାତ୍ ଯାଇ ପୁଷ୍ପକୁ କୁଣ୍ଢେଇଧରି କହିଲା–

"କାନ୍ଦୁଛ ?"

ପୁଷ୍ପ ଅଶ୍ରୁ ଛଳଛଳ ମୁଖରେ ଶୁଭେନ୍ଦୁକୁ ଚାହିଁ କ'ଣ କହିବାକୁ ଉଦ୍ୟତ ହୋଇ କହିପାରିଲା ନାହିଁ ।

ଶୁଭେନ୍ଦୁ ବୁଝିପାରି କହିଉଠିଲା–

"ନା ନା, ମତେ କିଛି କୁହନା । ମୁଁ ତମର ସବୁ କହିବାର ବାହାରକୁ ଚାଲି ଯାଇଛି । ଆଉ କିଛି କଥା ମୁଁ ଜଗତର ଶୁଣିବି ନାହିଁ ।"

ପୁଷ୍ପ ଉଚ୍ଚସ୍ୱରରେ କାନ୍ଦିଉଠି କହିଲା–

"ନାଇଁ, ମୁଁ କହିବି । ନ କହିଲେ ଯେ ମୁଁ ବଞ୍ଚିପାରିବି ନାହିଁ । ମୁଁ କେବେହେଲେ ତମକୁ ଠକିପାରିବି ନାହିଁ । ମିଥ୍ୟା ଆବରଣ ପିନ୍ଧି ମୁଁ କେବେହେଁ ଇନ୍ଦ୍ରାଣୀ ସାଜି ବସିପାରିବି ନାହିଁ । ତମକୁ ମୋ କଥା ଶୁଣିବାକୁ ହବ । ମୋ କଥା ଶୁଣିଲେ ତମେ ମତେ କେବେହେଲେ ଗ୍ରହଣ କରିପାରିବ ନାହିଁ ।"

ଶୁଭେନ୍ଦୁ ପୁଷ୍ପର ରୋରୁଦ୍ୟମାନ କରୁଣ ମୁହଁକୁ ଚାହିଁ ମୁହୂର୍ତ୍ତେ କାଳ କ'ଣ ଭାବିଲା, ପରେ ତାକୁ ଜୋର୍ କରି ଛାତି ଉପରକୁ ଟେକିନେଇ ଦୁଇ ହାତରେ ଜାକି ଧରି, ଉଚ୍ଛ୍ୱସିତ ଆବେଗରେ କାନ୍ଦିପକାଇ କହିଲା–

"ନା ମୁଁ ଆଉ ତମର କିଛି ଶୁଣିବି ନାଇଁ ।"

ପୁଷ୍ପ ଶୁଭେନ୍ଦୁର ଛାତି ଉପରୁ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରୁକରୁ ସେହିପରି କ୍ରନ୍ଦନ ସ୍ୱରରେ କହିଲା–

"ମତେ ଛାଡ଼ିଦିଅ । ମୋର ରୂପରେ ଭୁଲି ମୋର ସର୍ବନାଶ କରନା । ମୋ' କଥା ଶୁଣି ମତେ ତଳକୁ ପକାଇ ଦେବା ପୂର୍ବରୁ ମତେ ଛାଡ଼ିଦିଅ । ମୋ କଥା ଶୁଣ, ମତେ ସବୁଦିନ ପାଇଁ ମନସ୍ତାପରେ ଘାଣ୍ଟିହୋଇ ମରିବାକୁ ରଖ ନାଇଁ ।"

ପୁଷ୍ପକୁ ସେହିପରି ଛାତିରେ ଜାକିଧରି, ଶୁଭେନ୍ଦୁ ତନ୍ମୟ ଭାବରେ ତବାର ଏପାଖସେପାଖ ବୁଲୁବୁଲୁ କହିଲା–

"ସେ ଭୟ କରନା । ମୁଁ ତମକୁ ଯେତେବେଳେ ମୋ ଛାତି ଉପରକୁ ଆଣି ସାରିଲିଣି, ଆଉ ତଳକୁ ଖସାଇଦେଇପାରିବି ନାହିଁ । ତମେ ଯଦି ତମ ସତ କଥାର ବଜ୍ର ମୋ' ଉପରେ ବର୍ତ୍ତମାନ ପ୍ରହାର କର, ତେବେ ବି ତାହା ତିଳେ ମାତ୍ର ମୋତେ

ପଛକୁ ଘୁଞ୍ଚାଇପାରିବ ନାହିଁ । ହୃଦୟର ଦାବିକୁ ଉପେକ୍ଷା କରିବାର କାପୁରୁଷତା ମୋର ନାହିଁ । ମୁଁ ଏଡ଼େ ହୀନ ହୋଇ ପାରିବି ନାହିଁ । ତମର ଯଦି କିଛି କହିବାକୁ ଇଚ୍ଛା ହେଉଛି, ତା' ହେଲେ ମୋର ସେହି ଛାତି ଉପରେ ଥାଇ କୁହ । ତମ କଥାର ପ୍ରତ୍ୟୁତ୍ତର ତମେ ସେହିଠାରୁ ଶୁଣିପାରିବ ।"

ପୁଷ୍ପ ଅତି ବ୍ୟସ୍ତ ହେଲାପରି ଅଶ୍ରୁସିକ୍ତ କଣ୍ଠରେ କହିଲା–

"ମତେ ଏସବୁ କଥା କୁହନା । ତା'ହେଲେ ମୁଁ ମୋ' କଥା କହିବାର ସାହସ ହରାଇଦେବି । ତମ ଦେହକୁ ଛୁଇଁ ମୁଁ କିଛି କହିପାରିବି ନାହିଁ । ମତେ ତଳକୁ ଓହ୍ଲାଇଦିଅ । ମୁଁ କହିସାରେ, ତା'ପରେ ତମର ଯାହା ଇଚ୍ଛା ତା' କର ।"

ଶୁଭେନ୍ଦ୍ର ସେହିପରି ବୁଲୁବୁଲୁ କହିଲା–

"ନା, ଆଉ ତମେ ଓହ୍ଲାଅ ନାହିଁ, ତା' ହେଲେ ମୋ ଛାତି ଜଳିଉଠିବ । ତମେ ଅଛ, ଖୁବ୍ ଥଣ୍ଡା ଲାଗୁଛି । ତୁମର ସ୍ଥାନ କେବଳ ମାତ୍ର ସେହି ଛାତି ଉପରେ । ତଳେ ନୁହେଁ । ତମପରି ରତ୍ନକୁ ତଳେ ପକାଇଦେବାର ମୂର୍ଖତା ମୋର ନାହିଁ ।"

ପୁଷ୍ପର କ୍ରନ୍ଦନ କରିବାର ଭାବ କମିଆସୁଥିଲା, ସେ ଅତି କରୁଣ ଭାବରେ ଶୁଭେନ୍ଦ୍ରର ଓଠକୁ ଧରି କହିଲା–

"ହେ, ହେ, ମୋର ଏଇ ଗୋଟିକ କଥା ରଖ। ଆଉ କେବେହେଲେ ପଛେ ମୋ' କଥା ଶୁଣିବ ନାହିଁ । ମତେ ପଦେ କଥା କହିବାକୁ ତଳକୁ ଓହ୍ଲାଇଦିଅ ।"

ପୁଷ୍ପକୁ ତଳକୁ ଓହ୍ଲାଇଦେବାର ଇଚ୍ଛା ମୋଟେ ଶୁଭେନ୍ଦ୍ରର ନଥିଲା । ସେ ଅତି କଷ୍ଟରେ ତାକୁ ଛାତିରୁ ଓହ୍ଲାଇଦେଇ ସ୍ନେହରେ ହସିହସି କହିଲା–

"ହଉ ତେବେ, କୁହ ।"

ତଳକୁ ଓହ୍ଲାଇ ପୁଷ୍ପ କିଛି ସମୟ ସେହିପରି ଶୁଭେନ୍ଦ୍ରକୁ ଚାହିଁ ଠିଆହୋଇ ରହିଲା ।

"କୁହ, ମୋଟେ ଅଳ୍ପ ସମୟ, ପାଞ୍ଚମିନିଟ୍ ।"

ପୁଷ୍ପ ମନରୁ ସବୁ ଅଭିମାନ ଦୂରକରିଦେଇ, ଅତି ସହଜ ଭାବରେ ଶୁଭେନ୍ଦ୍ର ଉପରେ ତା'ର କରୁଣ ଚାହାଣି ନିବଦ୍ଧ କରି, ସ୍ଥିର ଅଚଞ୍ଚଳ ସ୍ୱରରେ କହିଲା–

"ମତେ ବୃଥାରେ ଭଲପାଅନା; ପଛରେ ଅନୁତାପ କରିବାକୁ ପଡ଼ିବ ।"

ପୁଷ୍ପର ସେ ବିଶ୍ୱବନ୍ଦିନୀ ଠାଣିରେ ଶୁଭେନ୍ଦ୍ରର ଦୃଷ୍ଟି ସ୍ଥଗିତ ହୋଇଯାଇଥିଲା । କିଛି ନ ଭାବି ସ୍ୱାଭାବିକ ସ୍ୱରରେ ପଚାରିଦେଲା–

"କାହିଁକି ?"

ପୁଷ୍ପ ସେହିପରି ଧୀର ଭାବରେ କହିଲା–

"ମୁଁ ବିଧବା ।"

ଶୁଭେନ୍ଦୁ ହଠାତ୍ ବିସ୍ମିତ ହୋଇ ପଚାରିଲା–

"ବିଧବା, ତମେ ?"

ପୁଷ୍ପ ସେହିପରି କହିଲା–

"ହଁ ।"

ଶୁଭେନ୍ଦୁ ମୃଦୁମୃଦୁ ହସୁହସୁ ପୁଷ୍ପ ମୁହଁକୁ ଚାହିଁ କହିଲା–

"ତା' ହେଲେ ବାଲ୍ୟବିଧବା ?"

ପୁଷ୍ପ କହିଲା–

"ନାଇଁ ।"

"ତା' ହେଲେ ତମେ... ?"

"ନାଇଁ...ମୁଁ..."

ଶୁଭେନ୍ଦୁ ଆଗ୍ରହ ପ୍ରକାଶ କରି କହିଲା–

"କୁହ, କିଛି ସଙ୍କୋଚ କରନା । ମତେ ଶୁଣିବାକୁ ଭାରି ଭଲ ଲାଗୁଛି । ମୁଁ ତୁମକୁ ଆହୁରି ବେଶି ଭାବରେ ମୋ' ଭିତରେ ଅନୁଭବ କରୁଛି । କୁହ ରାଣୀ, କୁହ । ମୋର ବାଟକୁ ଆହୁରି ନିର୍ମଳ, ଆହୁରି ପ୍ରଶସ୍ତ କରିଦିଅ । କୁହ, ମତେ ଆଉ ବଞ୍ଚିତ କରନା ।"

ପୁଷ୍ପ ଶୁଭେନ୍ଦୁ କଥାରେ ଉତ୍ସାହିତ ହେଲେହେଁ ତା'ର କହିବାର ସାହସ କିପରି କମିଆସୁଥିଲା । ସେ କେବଳ ଛଳଛଳ ଆଖିରେ ଶୁଭେନ୍ଦୁକୁ ଚାହିଁରହିଲା ।

ଶୁଭେନ୍ଦୁ ଉଦ୍‌ବିଗ୍ନ ହୋଇଉଠିଲା । ପୁଷ୍ପର ସାହସ ଆହୁରି କମିଗଲା । ତା' ଦେହ ଥରିଉଠିଲା । ସେ କଥା କହିପାରିଲା ନାହିଁ । ମୁହଁଟି ତା'ର ଶୁଖିଗଲା । ଶୁଭେନ୍ଦୁ ଜାଣିପାରି ବିଚଳିତ ଭାବରେ ପୁଷ୍ପକୁ କୁଣ୍ଢେଇ ଛାତି ପାଖକୁ ଆଉଜାଇଆଣି ମଧୁର କଣ୍ଠରେ କହିଲା–

"ଥାଉ, ସେତିକି ଥାଉ । ତମର ସ୍ଥାନ ମୋର ଏ ହୃଦୟ-ସିଂହାସନ ଉପରେ, ତଳେ ନୁହେଁ । ଆସ ରାଣୀ, ନିଜର ଆସନରେ ବସିଲେ କହିବାର ସାହସ ବଢ଼ିଯିବ ।" ଏହା କହି ଶୁଭେନ୍ଦୁ ପୁଷ୍ପକୁ ଛାତି ଉପରକୁ ଉଠାଇବାବେଳେ ପୁଷ୍ପ କାନ୍ଦିକାନ୍ଦି ବିନୟ ଭାବରେ କହିଲା–

"ମୁଁ ଅଲକ୍ଷ୍ମୀ, ମତେ ଛୁଅଁନା । ସ୍ୱାମୀଘରକୁ ଯିବାକୁ ଦୁଇଦିନ ବାକି ଅଛି, ମୁଁ ସ୍ୱାମୀ ଖାଇଛି । ମତେ ଛାଡ଼ିଦିଅ । ଛୁଅଁନା ।"

ଶୁଭେନ୍ଦ୍ର ପୁଷ୍ପକୁ ଛାତି ଉପରକୁ ନେଇ ତାକୁ ଦୁଇବାହୁରେ ଆବଦ୍ଧ କରି ଉଚ୍ଚ ସ୍ୱରରେ ହସି ଉଠି କହିଲା–

"ବା !, ଚମତ୍କାର କଥା ତ ! ଆମ ଦେଶରେ ତ ମନୁଷ୍ୟ କେବେ ମନୁଷ୍ୟକୁ ଖାଇବା କଥା ଶୁଣାନାହିଁ । ଆଚ୍ଛା, ତମେ ତ ଆଦୌ ସ୍ୱାମୀଘରକୁ ଯାଇନାହଁ, ତାକୁ ଖାଇଲ କିପରି ? ଆଉ ଯାଇଥିଲେ ବି ତମେ ତାକୁ କିପରି ବା ଖାଇଥାନ୍ତ ? ଛି ଛି, କି ଅସଭ୍ୟତା, କି ବର୍ବରତା !"

ପୁଷ୍ପ ଶୁଭେନ୍ଦ୍ରର କାନ୍ଧ ଉପରେ ମସ୍ତକ ରଖି ସେହିପରି କାନ୍ଦୁ କାନ୍ଦୁ କହିଲା–

"ମତେ ଯେ ସମସ୍ତେ ଅଲକ୍ଷଣୀ ବୋଲି କହନ୍ତି । ସେଥିପାଇଁ ମତେ ଗୋଟିଏ କୁତ୍ସିତ ବୁଢ଼ାକୁ ଦ୍ୱିତୀୟ କରି ଦେଉଥିଲେ । ତା'ର କିଛି ସମ୍ପତ୍ତି ଥିଲା, ଆଉ କେହି ନଥିଲେ । ଆମ ପାଟକୀ ଜାତିରେ ଶାଢ଼ି ଶଙ୍ଖା ଦେଇ ଦ୍ୱିତୀୟ ହୁଅନ୍ତି । ସେ ମୋତେ ଶାଢ଼ି ଶଙ୍ଖା ଦେଇ ତା' ଘରକୁ ଘେନିଯାଉଥିଲା ।"

ଶୁଭେନ୍ଦ୍ର ପୁଷ୍ପକୁ ଜୋରରେ ଛାତିରେ ଭିଡ଼ିଧରି ଉଚ୍ଚହାସ୍ୟ କରି କହିଲା–

"ବାଟରୁ ମୁଁ ଘେନି ଆସିଲି, ନୁହେଁ ? ତା'ହେଲେ ମୁଁ ତୁମକୁ ଦ୍ୱିତୀୟ ହେଲି ।"

ପୁଷ୍ପ ଶୁଭେନ୍ଦ୍ରର ବେକକୁ ଭିଡ଼ିଧରି କଇଁକଇଁ ହୋଇ କାନ୍ଦି ଉଠି କହିଲା–

"ନାଇଁ ନାଇଁ । ତମେ ମୋତେ କେବେହେଁ ଗ୍ରହଣ କରିପାରିବ ନାହିଁ । ତମେ କାହିଁକି ମୋ' ପାଇଁ ସମାଜ ଛାଡ଼ିବ ? କାହିଁକି ଏ ଦୁଃଖଦୁର୍ଦ୍ଦଶାକୁ ବରଣ କରିବ ? କାହିଁକି ତମେ ସମାଜ ଆଖିରେ ଚକ୍ଷୁଶୂଳ ହୋଇ ରହିବ ?"

ଶୁଭେନ୍ଦ୍ର ସେହିଭାବରେ ଅବିଚଳିତ ଦୃଢ଼ କଣ୍ଠରେ କହିଲା–

("ରାଣୀ, ମୋର ହୃଦୟର ରାଣୀ ତମେ । ମୋର ହୃଦୟ ଉପରେ କାନ ଦେଇଛ, ତା'ର କଥା ଶୁଣିପାରିନାହଁ ? ସମାଜକୁ ଡରୁଛ ? ଯେଉଁ ସମାଜ ତମପରି ପ୍ରସ୍ଫୁଟିତ ସୁକୋମଳ ପୁଷ୍ପକୁ ମଧ୍ୟ ବିଷ ଦେଇ ମାରେ, ଯେଉଁ ସମାଜ ତମର ମୋର ମିଳନ କରିଦେଇପାରେନା, କେବଳ ବିଚ୍ଛିନ୍ନ କରିଦିଏ, ଯେଉଁ ସମାଜ କତିରେ ହୃଦୟ ଅପେକ୍ଷା ଜାତିର ମୂଲ୍ୟ ବେଶି, ମନୁଷ୍ୟ ଅପେକ୍ଷା ତା'ର ନିୟମର ମୂଲ୍ୟ ବେଶି, ପ୍ରାଣର ବନ୍ଧନ ଅପେକ୍ଷା ଅର୍ଥଶୂନ୍ୟ ମନ୍ତ୍ରର ବନ୍ଧନ ଅଧିକ ସମ୍ମାନିତ, ସେହି ସମାଜ ଆଜି ତମର ଏ ତପ୍ତ ନିଶ୍ୱାସରେ ଜଳିପୋଡ଼ିଯାଉ । ତମର ଏ ତପ୍ତ ଅଶ୍ରୁ ସ୍ରୋତରେ ଭାସିଯାଇ ନିଶ୍ଚିହ୍ନ ହୋଇଯାଉ । ହେ ମୋର ରାଣୀ, ହେ ସୌନ୍ଦର୍ଯ୍ୟର

ରାଣୀ ! ବିଧାତାର ଶ୍ରେଷ୍ଠତମ ସୃଷ୍ଟି, ଆଉ କାନ୍ଦ ନାହିଁ । ମିଳନର ଏ ଶୁଭ ମୁହୂର୍ତ୍ତରେ ସେହି ଜରାଜୀର୍ଣ୍ଣ ସମାଜର ବକ୍ଷପିଞ୍ଜର ଉପରେ ଛିଡ଼ାହୋଇ, ଉଚ୍ଚସ୍ୱରରେ ହସି ହସି ପାଦରେ ତାକୁ ଦଳିଚକଟି ମଟ୍ଟି ଧୂଳି କରିଦିଅ । ଆମର ଏହି ମିଳିତ ହର୍ଷଧ୍ୱନିର ବାତ୍ୟାରେ ତା'ର ପ୍ରତ୍ୟେକ ଧୂଳିକଣା କେଉଁଆଡ଼େ ଉଭେଇଯାଉ ।" )

ଶୁଭେନ୍ଦ୍ର ନିଜ କାନ୍ଧ ଉପରୁ ପୁଷ୍ପର ମୁହଁକୁ ଈଷତ୍ ଟେକିଧରି ପ୍ରେମ ଗଦ୍‌ଗଦ ଭାବରେ କହିଲା–

"କାନ୍ଦୁଛ ! ମୁଁ ଆଉ ତମର ଏ ଅଶ୍ରୁପାତ ସହିପାରିବି ନାହିଁ ।"

କହି, ନିଜର ଗଣ୍ଡଦ୍ୱାରା ପୁଷ୍ପ ଗଣ୍ଡର ଅଶ୍ରୁଧାରା ପୋଛିଦେଇ ପୁଣି କହିଲା–

"ପୁଷ୍ପ, ପୁଷ୍ପରାଣୀ ! ମତେ ଚାହଁ । ଦେଖିବ–ମୋ' ମୁହଁରୁ କୌଣସି ଅବିଶ୍ୱାସର ଚିହ୍ନ ପାଇବ ନାହିଁ । ଚାହାଁ ମତେ ।"

ଏହା କହି ଶୁଭେନ୍ଦ୍ର ପୁଷ୍ପର ଚିବୁକ୍‌ଟିକୁ ଧରି ଧୀର ଭାବରେ ନିଜର ମୁହଁ ଆଡ଼କୁ ବୁଲାଇଦେଲା ।

ଶରତର ଶୁଭ୍ର ମେଘମାଳ ଆକାଶ ପଟରୁ ଅପସାରିତ ହେଲାପରି ପୁଷ୍ପର କମନୀୟ ପକ୍ଷ୍ମ-ଯୁଗଳ ଧୀରେ ଉନ୍‌ମୁକ୍ତ ହେଲା । ଆକାଶ ପରି ସ୍ୱଚ୍ଛ ନୀଳ ଆଖିରେ ପୁଷ୍ପ ତା'ର ସମସ୍ତ ବ୍ୟାକୁଳତା ପୁଞ୍ଜୀଭୂତ କରି ନମ୍ର ଭାବରେ ଶୁଭେନ୍ଦ୍ର ମୁହଁକୁ ଚାହିଁଲା ।

ଶୁଭେନ୍ଦ୍ର ନିଜର ପ୍ରେମ ପ୍ଲାବିତ ମୁହଁଟିକୁ ପୁଷ୍ପ ଆଡ଼କୁ ବଢ଼ାଇଦେଇ ଆବେଗପୂର୍ଣ୍ଣ କଣ୍ଠରେ କହିଲା–

"ଦେଖିଲ, କିଛି ପାଉଛ ? ଅବିଶ୍ୱାସ କରିବାର କିଛି ଅଛି ? ମୁଁ ତମ ଚକ୍ରବାକ ଦମ୍ପତିର ବିରହ ନଦୀକୁ ପୋତିଦେଇ ପ୍ରଶସ୍ତ ପଥ ପ୍ରସ୍ତୁତ କରିଦେଇଛି । ଏହି ମୋ ମୁହଁ–ସେ ପଥ ପ୍ରଥମ ପ୍ରବେଶ ତୋରଣ । ଠିଆ ହୋଇ ଚାହିଁଲେ ପୂଜୋପଚାର ପୂର୍ଣ୍ଣ, ଧୂପଧୂଆଁରେ ଆମୋଦିତ ସମସ୍ତ ପଥଟି ଦେଖିପାରିବ । ଆଉ ଦେଖିପାରିବ, ହୃଦୟତୋରଣ ନିକଟରେ ମୋର ସମସ୍ତ ପ୍ରବୃତ୍ତି ତୁମକୁ ଅଭିନନ୍ଦିତ କରି ନେବାପାଇଁ ଅର୍ଘ୍ୟଥାଳି ହସ୍ତରେ ଅତି ଆବେଗରେ ଅପେକ୍ଷା କରିରହିଛନ୍ତି । ଦେଖି ପାରୁଛ ?

ପୁଷ୍ପ ତା'ର ଭାବବିହ୍ୱଳ ଆଖିକୁ ଧୀରେ ଧୀରେ ନିମୀଳିତ କରି, ନିଶିପଦ୍ମର ମୃଣାଳ ସଦୃଶ ଗ୍ରୀବାଟିକୁ ବକ୍ର କରି, ଶୁଭେନ୍ଦ୍ରର ଅଧର ଉପରେ ନିଜର ସୁକୁମାର ଗଣ୍ଡକୁ ନୁଆଁଇଦେଇ ତା'ର ଉତ୍ତର ଦେଲା ।

ଶୁଭେନ୍ଦ୍ରର ସମସ୍ତ ପୁରୁଷପ୍ରବୃତ୍ତି କ୍ଷିପ୍ର ହୋଇଉଠିଲା । ସେ ହିଂସ୍ର ପଶୁ ପରି ସ୍ଥାନାସ୍ଥାନ ନ ବିଚାରି ପୁଷ୍ପର ସମସ୍ତ ମୁହଁଟିକୁ ଚୁମ୍ବନଚୁମ୍ବନରେ ଗୋଟିଏ ଆରକ୍ତ ଗୋଲାପଫୁଲ ସଦୃଶ ଫୁଟାଇଦେଲା ।

ପୁଷ୍ପର କୌଣସି କଥା କହିବାର ଶକ୍ତି କି ଅବକାଶ ନଥିଲା । ସେ ନିଶ୍ଚେଷ୍ଟ ଭାବରେ ଶୁଭେନ୍ଦ୍ରର ଛାତି ଉପରେ ପଡ଼ିରହିଲା ।

କ୍ଷଣକ ପରେ ଶୁଭେନ୍ଦ୍ର ପୁଷ୍ପର ମୁହଁରେ ଅତି ଆଦର ସହିତ ହାତ ବୁଲାଇ ଦେଇ ଅଧୀର ଭାବରେ କହିଲା–

"ରାଣୀ ! ଟିକେ ହସ ! ମିଳନର ଏ ଶୁଭମୁହୂର୍ତ୍ତକୁ ତମର ହାସ୍ୟ-ଇନ୍ଦ୍ରଧନୁରେ ରଞ୍ଜିତ କରିଦିଅ ।"

କହିସାରି ନିଜ ଗଣ୍ଡରେ ପୁଷ୍ପର ଗଣ୍ଡକୁ ସ୍ପର୍ଶ କଲା ।

ପୁଷ୍ପ ଆଖିବୁଜି ଆନନ୍ଦରେ ଉଚ୍ଛ୍ୱସିତ ଅଶ୍ରୁବେଗ ଜୋର୍ କରି ଦମନ କରୁକରୁ କଳହଂସ କଣ୍ଠରେ ହସିଉଠିଲା ।

ଶୁଭେନ୍ଦ୍ର ମଧ୍ୟ ପୁଷ୍ପ ସହିତ ଆନନ୍ଦରେ ହସିଉଠିଲା ।

ହାସ୍ୟର ଏ ମିଳିତ ମଧୁର ଧ୍ୱନି ଗଗନପବନକୁ ମୁଖରିତ କରି ଝଙ୍କୃତ ହୋଇଉଠିଲା ।

ରେଳଟି ମଧ୍ୟ ଆନନ୍ଦରେ ଅଧୀର ହୋଇ ଉଚ୍ଚ ସ୍ୱରରେ ହସିହସି ପବନ ବେଗରେ ଛୁଟିବାକୁ ଲାଗିଲା ।

ଶୁଭେନ୍ଦ୍ର କିଛିକ୍ଷଣ ପୁଷ୍ପ ମୁହଁକୁ ମୁଗ୍ଧ ଦୃଷ୍ଟିରେ ଚାହିଁ ନଇଁପଡ଼ି ତାକୁ ଗଦି ଉପରେ ଶୁଆଇଦେଇ ଦେଖିଲା, ଆହୁରି ନିବିଡ଼ ଭାବରେ ପୁଷ୍ପ ତା ଗଳାକୁ ଚାପି ଧରିଛି । ସେ ମଧ୍ୟ ତା'ର ମୁକ୍ତି ଚାହୁଁନଥିଲା ।

ରାତିଅନିଦ୍ରା ଯୋଗେ ପୁଷ୍ପ ଶୋଇପଡ଼ିଥିଲା । ଯେତେବେଳେ ନଇପୋଲ ଉପରେ ରେଳ ପଡ଼ି ଘୋରଘର୍ଘର ଶବ୍ଦ ହେଲା, ସେ ଚେଇଁଉଠି ଦେଖିଲା, ଶୁଭେନ୍ଦ୍ର ବସି ତା ଦେହରେ ହାତମାରିଦେଉଛି । ସେ ହଠାତ୍ ଛିଡ଼ାହୋଇ ଦେହରେ ଲୁଗା ସଜାଡ଼ି ନେଇ ବେକରେ ଲୁଗାକାନିଟିକୁ ପକାଇ ଶୁଭେନ୍ଦ୍ରର ଦୁଇପାଦ ଉପରେ ମୁଣ୍ଡ ରଖି ପ୍ରଣାମ କଲାବେଳେ ଶୁଭେନ୍ଦ୍ର 'ଏ କ'ଣ କରୁଛ' ବୋଲି କହି ତାକୁ ତଳୁ ଉଠାଇବାକୁ ବସିଲା ।

ପୁଷ୍ପ ନ ଉଠି ମନେମନେ କହିଲା–

"ଦେବତା ମୋର, ଏହି ଶ୍ରୀପଦସେବାରୁ ମତେ ଆଉ ବଞ୍ଚିତ କରନାହିଁ।"

ଶୁଭେନ୍ଦ୍ର ପୁଷ୍ପକୁ ଉଠାଇଆଣି ନିଜେ ପୁଷ୍ପର ପାଦତଳେ ମୁଣ୍ଡ ଦେବାକୁ ଉଦ୍ୟତ ହେଲାରୁ ପୁଷ୍ପ ଶୁଭେନ୍ଦ୍ରର ଗଳାରେ ନିଜର ବାହୁବେଷ୍ଟନ କରି ଶୁଭେନ୍ଦ୍ରର ଅଧର ନିକଟକୁ ନିଜର ଅଧର ବଢ଼ାଇଦେଲା ।

ଶୁଭେନ୍ଦ୍ର ତାକୁ ଭିଡ଼ିଧରି ତା'ର ପାଟଳ ଅଧରକୁ ପୁଷ୍ପର ଜବାଧର ସଙ୍ଗରେ ମିଶ୍ରିତ କରିଦେଲା ।

ପୁଷ୍ପ ଈଷତ୍ ମୁଖ ଅପସାରିତ କରିଆଣି, ହସିହସି ବୀଣାଜିଣା ସ୍ୱରରେ କହିଲା—

"ଏଇଟା ମୋର ପ୍ରାପ୍ୟ, ସେଇଟା ତମର ପ୍ରାପ୍ୟ।"

ଶୁଭେନ୍ଦ୍ର ଏ କଥାରେ ଉଚ୍ଚସ୍ୱରରେ ହସିଉଠି କହିଲା–

("ଯେଉଁ ସମାଜକୁ ହସିହସି ପାଦରେ ଦଳିଦେଲ, ପୁଣି ସେହି ସମାଜର ନିକିତରେ ନାରୀପୁରୁଷକୁ ଓଜନ କଲେ ଠିକ୍ ହେବ ନାହିଁ । ସୃଷ୍ଟିରେ ନାରୀ ଓ ପୁରୁଷ ଉଭୟଙ୍କର ସ୍ଥାନ ସମାନ, କେହି ବଡ଼ କେହି ସାନ ନୁହେଁ । ନାରୀ ପୁରୁଷ ପରସ୍ପର ପତି-ପତ୍ନୀ—ସ୍ୱାମୀ-ସ୍ତ୍ରୀ ନୁହନ୍ତି । ପରସ୍ପର ବନ୍ଧୁ—ପ୍ରଭୁ ଆଉ ଦାସୀ ନୁହନ୍ତି ।)

ମୁହୂର୍ତ୍ତେ ପରସ୍ପରକୁ ଚାହିଁରହି ଅଜାଣତରେ ଉଭୟେ ନିବିଡ଼ ଭାବରେ ପରସ୍ପରକୁ ଆଲିଙ୍ଗନ କଲେ । ସତେ ଯେପରି ଦୁଇଟି ଦେହ ଏକ ହୋଇଗଲା ।

ଗାଡ଼ି ଷ୍ଟେସନରେ ପହଞ୍ଚିଲାକ୍ଷଣି ଦେଖିଲେ, ମିନି ପ୍ଲାଟଫର୍ମରେ ଛିଡ଼ାହୋଇ ତା'ର ଅଭିମାନଭରା ସୁନୀଳ ଚପଳ ଆଖିରେ, ଛନଛନ କରି ଏପାଖସେପାଖ ଚାହୁଁଛି । ତା'ର ସେହି ଚାହାଣିରୁ ତା'ର ମନର ଭାବ ବେଶ୍ ବୁଝାପଡୁଛି ।

ଶୁଭେନ୍ଦ୍ର ଆଉ ପୁଷ୍ପ ଉଭୟେ ଚଞ୍ଚଳ ଗାଡ଼ିରୁ ଓହ୍ଲାଇପଡ଼ି, ହସିହସି ଦୌଡ଼ିଆସି ମିନିକୁ, ଜଣେ ପାଦ ପାଖରୁ ଆଉଜଣେ ବେକ ପାଖରୁ ଧରି ଉପରକୁ ଉଠାଇ ନେଲେ ।

ମିନି ଅତି ରାଗରେ ଗୋଡ଼ହାତ ବାଡ଼େଇ କଉଡ଼ି କାନ୍ଦିକାନ୍ଦି ଚିତ୍କାର କରି କହିଲା–

"ନାଇଁ ନାଇଁ, ମୁଁ କେଉଁ ତମ କତିକୁ ଯିବିନାଇଁ । ମୁଁ ତମକୁ ଜାଣିଲିଣି ଯେ, ଦିହେଁ ଶିଖାଶିଖି ହେଇ ଚାଲିଗଲ, ମତେ ନେଲନାଇଁ ।"

ଦୁହେଁ ସେହିପରି ମିନିକୁ ଧରି, ଉଚ୍ଚସ୍ୱରରେ ହସିଉଠି ମଟରରେ ବସିଲେ ।

ପୁଷ୍ପ ମିନିକୁ କୋଳକୁ ଆଣିଲାରୁ ମିନି ରାଗିଉଠି କହିଲା–

"ହଁ ହଁ, ତମକଥା ସବୁ ଜଣାଗଲାଣି ଯେ, ନୂଆବୋଉଯାକ ଭାଇଙ୍କି ଶିଖାଇଦେଇ ଭଉଣୀକଥା ଭୁଲେଇଦିଅନ୍ତି । ତୁମକୁ ଆଉ କେବେ ବିଶ୍ୱାସ କରିବି ନାହିଁ ।"

ପୁଷ୍ପ ମିନିକୁ ଜୋର୍ କରି କୋଳକୁ ଘେନିଆସି, ତା' ମୁହଁରେ ମୁହଁଲଗାଇ ଦେଇ ସୋହାଗ ଜରଜର କଣ୍ଠରେ କହିଲା–

"ମୋ' ସୁନା ଭଉଣୀଟି ପରା, ମୁଁ ପରା ଯାଇଥିଲି ତମ ପାଇଁ ବରଟିଏ ଆଣିବାକୁ ।"

ମିନି ସେହିପରି ରାଗି କହିଲା–

"ହଁ ହଁ, ମୋ ପେଇଁ ନା ନିଜପେଇଁ?"

ଶୁଭେନ୍ଦୁ ଆଉ ପୁଷ୍ପ ଠୋ ଠୋ ହୋଇ ହସିଲେ ।

ଡ୍ରାଇଭର ମଟର ଛାଡ଼ିଦେଲା ।





ବିଦ୍ୟାଧର ବର୍ମା

ଶିକ୍ଷାଗୁରୁ ବିଦ୍ୟାଧର ବର୍ମା ଓଡ଼ିଶାର ଜାତୀୟ ଇତିହାସରେ ଏକ ବିସ୍ମୟ। ଉତ୍କଳୀୟ କଳା, ସାହିତ୍ୟ ଓ ସଂସ୍କୃତିର ସମୃଦ୍ଧିରେ ତାଙ୍କ ଅବଦାନ ଅବିସ୍ମରଣୀୟ । ଅପୂର୍ବ ଚିତ୍ର ଅଙ୍କନ ସହ ଅନନ୍ୟ ଉପନ୍ୟାସ ରଚନା ବର୍ମାଙ୍କ ପ୍ରତିଭାଦୀପ୍ତ ଜୀବନର ସ୍ୱାକ୍ଷର ମାତ୍ର ।

'ପତିପତ୍ନୀ' ବିଦ୍ୟାଧର ବର୍ମାଙ୍କ ଏକମାତ୍ର ପ୍ରକାଶିତ ଉପନ୍ୟାସ । ବିଷୟବସ୍ତୁ, ଚରିତ୍ର, ଶୈଳୀ, ଆଭିମୁଖ୍ୟ ଓ ଉପନ୍ୟାସ କଳା ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ଏହା ଏକ ବିରଳ ସାରସ୍ୱତ ସମ୍ଭାର । ବହୁ ପାଠକୀୟ ଆଦୃତି ଲାଭ କରିଥିବା ଏହି ଦୁଷ୍ପ୍ରାପ୍ୟ ରଚନାକୁ ଏକବିଂଶ ଶତାବ୍ଦୀର ନୂତନ ପିଢ଼ି ପାଇଁ ସୁପରିଚିତ ସାହିତ୍ୟିକ ଡକ୍ଟର ବିଜୟାନନ୍ଦ ସିଂହ ଉପସ୍ଥାପନ କରି ଏକ ସ୍ମରଣୀୟ କାର୍ଯ୍ୟ କରିଛନ୍ତି ।


ISBN 81-7401-671-6
9 788174 016713



ଫ୍ରେଣ୍ଡ୍ସ ପବ୍ଲିଶର୍ସ